କବିସୂର୍ଯ୍ୟ ବଳଦେବ ରଥ-ବିରଚିତ

# କିଶୋରଚନ୍ଦ୍ରାନନ୍ଦ ଚମ୍ପୂ

---

ସମ୍ପାଦନା ଓ ସମୀକ୍ଷା :

ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା

ଫ୍ରେଣ୍ଡସ୍ ପବ୍ଲିଶର୍ସ



ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ-୨

କିଶୋରଚନ୍ଦ୍ରାନନ୍ଦ ଚମ୍ପୂ

ପ୍ରକାଶକ :
ଶ୍ରୀ ସହଦେବ ପ୍ରଧାନ
ଫ୍ରେଣ୍ଡ୍ସ୍ ପବ୍ଲିସର୍ସ୍
ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ :
ଏପ୍ରିଲ୍—୧୯୭୭

ମୁଦ୍ରାକର :
ବାଣୀପ୍ରଭା ମୁଦ୍ରଣୀ
ଖଟବିନସାହି, କଟକ-୮

ପ୍ରଚ୍ଛଦ-ସଜ୍ଜା :
ଶିଳ୍ପୀ : ଶ୍ରୀ ମହେନ୍ଦ୍ର ପ୍ରସାଦ ମହାପାତ୍ର

ମୂଲ୍ୟ—ସାତ ଟଙ୍କା ପଚାଶ ପଇସା ମାତ୍ର

**KISHORE CHANDRANANDA CHAMPU**

*Edited by :*
**Dr. Krushna Charan Behera**

*Published by :*
**Sahadev Pradhan**
FRIENDS PUBLISHERS
BINODBIHARI, CUTTACK-2

**1st. Edition—1977**

*Printed by :*
**Baniprava Mudrani**
Cuttack-8

*Cover design :*
**Mahendra Prasad Mohapatra**

**Price Rs. 7.50 only.**

# ସୂଚିପତ୍ର



—*—

ପ୍ରାଚୀନ ପାଣ୍ଡୁଲିପିରୁ ପ୍ରାପ୍ତ କବିସୂର୍ଯ୍ୟ ବଳଦେବଙ୍କ ପ୍ରତିକୃତିର ଚିତ୍ରାଙ୍କନରୁ ଆବରଣ ଆଲୋକଚିତ୍ର—ଗ୍ରନ୍ଥାଦ୍ୟର ଅଳଙ୍କରଣ ।
ପ୍ରତିକୃତିର ଚିତ୍ରାଙ୍କନ—ଶିଳ୍ପୀ ଶ୍ରୀ ହରିଶରଣ ମହାପାତ୍ର (ଆସ୍କା)

# ଡକ୍ଟର ବେହେରାଙ୍କର ଅନ୍ୟାନ୍ୟ ରଚନା

ସମାଲୋଚନା ପ୍ରବନ୍ଧ :

୧ । ପ୍ରଗତି ସାହିତ୍ୟ (୧୯୫୮), ୨ୟ ସଂସ୍କରଣ (୧୯୭୦)
୨ । କଥା ସାହିତ୍ୟ (୧୯୬୦), ୨ୟ ସଂସ୍କରଣ (୧୯୬୮)
୩ । ଅଶ୍ଳୀଳତା ବିପକ୍ଷରେ (୧୯୬୬)
୪ । ଓଡ଼ିଆ ଉପନ୍ୟାସ (୧୯୬୮)
୫ । କେତୋଟି ସାହିତ୍ୟିକ ଅଭିଯୋଗ (୧୯୭୦), ୨ୟ ସଂସ୍କରଣ (୧୯୭୭)
୬ । ଅଧ୍ୟାପକର ବେଦନା (୧୯୭୨)
୭ । ଶ୍ରୀଜଗନ୍ନାଥ ଓ ଓଡ଼ିଆ ସାହିତ୍ୟ (୧୯୭୪)
୮ । ନାଟ୍ୟ ସାହିତ୍ୟ ପରିଚୟ (୧୯୭୭)

ସମ୍ପାଦିତ ଗ୍ରନ୍ଥ :

୧ । କବିଶେଖର ଚନ୍ଦ୍ରାମଣି (୧୯୬୩)
୨ । ମୋଗଲ ତାମସା (୧୯୬୬)

ଗଳ୍ପଗ୍ରନ୍ଥ :

୧ । ସୃଷ୍ଟିର ସ୍ୱପ୍ନ (୧୯୫୮)
୨ । ଗୋପନ ପଥ (୧୯୬୨)
୩ । ଛିଦ୍ର ଓ ପୋକ (୧୯୬୭)
୪ । 'ବେଙ୍ଗ' ଇତ୍ୟାଦି ଗଳ୍ପ (୧୯୭୧)
୫ । 'ନାଗ' ଏକ ନଦୀର ନାମ (୧୯୭୬)

କବିତା :

୧ । ଗ୍ରୀଷ୍ମ କଣ୍ଠରେ ଝଡ଼ (୧୯୫୩)
୨ । ଯୋଜନା-ଯଜ୍ଞ (୧୯୫୯)
୩ । ଭାନୁବାଇ ଲେନ୍ (୧୯୫୯)
୪ । ପିପାସାର ପ୍ରାର୍ଥନା (୧୯୬୮)

ଏକାଙ୍କିକା :

୧ । ଯଥା ନଳସ୍ୟ ଦମୟନ୍ତୀ (୧୯୫୯)

ଶିଶୁ-ସାହିତ୍ୟ :

୧ । କଥାଟିଏ କହୁଁ ଗୀତଟିଏ ଗାଉଁ (୧୯୬୮); ୨ୟ ସଂସ୍କରଣ (୧୯୭୫)

# ଅଗ୍ରଲେଖ

ଆମର ପ୍ରାଚୀନ ସାହିତ୍ୟ ଓ ଆଧୁନିକ ସାହିତ୍ୟ ଇତିହାସର ସନ୍ଧି-କ୍ଷଣରେ ରଚିତ କବିସୂର୍ଯ୍ୟ ବଳଦେବ ରଥଙ୍କର ଜନପ୍ରିୟ ତଥା ଉଚ୍ଚକୋଟୀର କାବ୍ୟ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ସମ୍ପାଦନା ପୂର୍ବକ କଟକର ଫ୍ରେଣ୍ଡସ୍ ପବ୍ଲିଶର୍ସଙ୍କଦ୍ୱାରା ପ୍ରକାଶ କରାଇଲା ବେଳେ ସ୍ୱର୍ଗୀୟ ଗୋବିନ୍ଦ ରଥ, ଦାମୋଦର ପଟ୍ଟନାୟକ, ଚିନ୍ତାମଣି ମହାପାତ୍ର, ପଣ୍ଡିତ କୁଳମଣି ଦାଶ, କବିବଲ୍ଲଭ ଭୁବନେଶ୍ୱର ମିଶ୍ର, ଶ୍ରୀ ନୀଳକଣ୍ଠ ପଟ୍ଟନାୟକ, କବିଚନ୍ଦ୍ର କାଳୀଚରଣ, ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ପ୍ରମୁଖ ସୁଧୀମଣ୍ଡଳୀଙ୍କ ବିଷୟ ଶ୍ରଦ୍ଧାର ସହ ସ୍ମରଣ କରୁଛି । ଏଇମାନେ ହିଁ କବିସୂର୍ଯ୍ୟଙ୍କ ରଚନା ସଂଗ୍ରହ, ସଂକଳନ, ସମ୍ପାଦନା ତଥା ସମୀକ୍ଷା କାର୍ଯ୍ୟରେ ଉଲ୍ଲେଖଯୋଗ୍ୟ କୃତିତ୍ୱ ପ୍ରଦର୍ଶନ କରି ଯାଇଛନ୍ତି । ଏମାନଙ୍କର ସାଧୁ ପ୍ରଚେଷ୍ଟା ନିକଟରେ ମୋର ଏ ସାମାନ୍ୟ ଉଦ୍ୟମକୁ ଦେଖି —କବିସୂର୍ଯ୍ୟଙ୍କ ଭାଷାରେ କହିବାକୁ ଗଲେ—"ଜନେ ହସିବେ ଏହି ତାହୁଁ ଫଳ" । ତଥାପି ବିଦଗ୍ଧ କବି ଅଭିମନ୍ୟୁଙ୍କ ଭାଷାରେ କହିବି—"ସରଧା ପରାୟେ ଅଳ୍ପବୁଦ୍ଧି ଶକ୍ତିହୀନ" ଥାଇ କେବଳ "ସର୍ବ ସୁମନା ସୁରସ କରିଛି ଏକତ୍ର", ଏବଂ ସେଥିପାଇଁ ଏ ଗ୍ରନ୍ଥଟିକୁ "ମଧୁକୋଷ-କାନ୍ତି" ରୂପେ ଗ୍ରହଣ କରିବା ଲାଗି ବିଜ୍ଞ ପାଠକମାନଙ୍କୁ ଅନୁରୋଧ କରୁଛି ।

କବିସୂର୍ଯ୍ୟଙ୍କର 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ୧୮୯୫ ମସିହା ବେଳକୁ କଟକ ରାୟ ପ୍ରେସରୁ ମୁଦ୍ରିତାକାରରେ ପ୍ରକାଶ ପାଇ ସାରିଥିଲା । ସେହିଦିନ-ଠାରୁ ଆଜ ପର୍ଯ୍ୟନ୍ତ ଏ କାବ୍ୟର ବହୁ ସଂସ୍କରଣ ବିଭିନ୍ନ ପ୍ରକାଶକଙ୍କଦ୍ୱାରା ପ୍ରକାଶିତ ହେବାରେ ଲାଗିଛି । କାବ୍ୟଟିର ଜନପ୍ରିୟତା ଏଇଥିରୁ ପ୍ରମାଣିତ ହୁଏ । ସଂସ୍କୃତ ଭାଷାରେ ରଚିତ ଚମ୍ପୂର ଶ୍ଳୋକ ଓ ଗଦ୍ୟାଂଶ କିନ୍ତୁ ଓଡ଼ିଆ ଗୀତଗୁଡ଼ିକ ସଦୃଶ ଆମର ପାଠକସମାଜ ଦ୍ୱାରା ସମାଦୃତ ହେଲାଭଳି ଲାଗେ ନାହିଁ । ସେଥିପାଇଁ ବୋଧହୁଏ କବିଚନ୍ଦ୍ର କାଳୀଚରଣ 'ଚମ୍ପୂ ପ୍ରବେଶ' ଗ୍ରନ୍ଥରେ ଓଡ଼ିଆ ପଦ୍ୟରେ 'ଅନୁଚିନ୍ତା' ଏବଂ ନାଟକୀୟ ମୁକ୍ତ ଛନ୍ଦରେ ସଂସ୍କୃତାଂଶର ଓଡ଼ିଆ ଅର୍ଥ ପ୍ରଦାନ କରି ବୈଚିତ୍ର୍ୟ ଓ ଅଭିନବତ୍ୱ ସୃଷ୍ଟି ପାଇଁ

ପ୍ରୟାସ କରିଛନ୍ତି । ଏହି ଗ୍ରନ୍ଥରେ ମୁଁ ସଂସ୍କୃତାଂଶର ଅନୁବାଦ ପାଇଁ ମୁଖ୍ୟତଃ ପଣ୍ଡିତ କୁଳମଣି ଦାଶଙ୍କୁ ଅନୁସରଣ କରିଛି । କିନ୍ତୁ ସଂସ୍କୃତାଂଶର ଟୀକା ବା ଅନ୍ୱୟକୁ ଅନାବଶ୍ୟକ ମନେ କରି ପରିତ୍ୟାଗ କରିଛି । ମୋର ସମୀକ୍ଷା-କାର୍ଯ୍ୟ ମୁଖ୍ୟତଃ ଚମ୍ପୂର ଚଉପଦୀଗୁଡ଼ିକରେ ପର୍ଯ୍ୟବସିତ ।

ଏହି ପ୍ରସଙ୍ଗରେ ଏଠାରେ ଉଲ୍ଲେଖଯୋଗ୍ୟ ଯେ—ନିକଟରେ ଓଡ଼ିଶା ସରକାରଙ୍କ ସହାୟତାରେ କଲିକତାର 'ଦି ଗ୍ରାମୋଫୋନ୍ କମ୍ପାନୀ ଅବ୍ ଇଣ୍ଡିଆ ଲିମିଟେଡ୍' କବିସୂର୍ଯ୍ୟଙ୍କ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' କାବ୍ୟରୁ ଚାରିଗୋଟି ସଙ୍ଗୀତ ଏବଂ କବିଙ୍କର ଅନ୍ୟାନ୍ୟ ଛଅଗୋଟି ସଙ୍ଗୀତ ସମବାୟରେ ଏକ ଲଙ୍ଗ୍-ପ୍ଲେ ରେକର୍ଡ଼୍ ରାଜ୍ୟର ବିଖ୍ୟାତ ସଙ୍ଗୀତ ଶିଳ୍ପୀମାନଙ୍କଦ୍ୱାରା ପ୍ରସ୍ତୁତ କରାଇ ଆମ୍ଭମାନଙ୍କର ଧନ୍ୟବାଦାର୍ହ ହୋଇଛନ୍ତି ।

ଏ ଗ୍ରନ୍ଥ ସମ୍ପାଦନାରେ ମୋର ପ୍ରିୟତମ ଛାତ୍ର ବ୍ରହ୍ମପୁର ଖଲ୍ଲିକୋଟ କଲେଜର ଅଧ୍ୟାପକ ଡକ୍ଟର କ୍ଷେତ୍ରବାସୀ ନାୟକ ଏବଂ ରେଭେନ୍ସା କଲେଜ ସଂସ୍କୃତ ବିଭାଗର ଅଧ୍ୟାପକ ଶ୍ରୀ ଶ୍ୟାମାଚରଣ ଦାସ ମୋତେ ସହାୟତା କରିଥିବାରୁ ସେମାନଙ୍କ ପ୍ରତି ସାଧୁବାଦ ଜ୍ଞାପନ କରୁଛି । କଟକ ଫ୍ରେଣ୍ଡସ୍ ପବ୍ଲିଶର୍ସର କର୍ଣ୍ଣଧାର ଶ୍ରୀ ସହଦେବ ପ୍ରଧାନ ଏବଂ ତାଙ୍କର କର୍ମକୁଶଳୀ ଶ୍ରୀ ବିଶ୍ୱନାଥ ତ୍ରିପାଠୀ ଗ୍ରନ୍ଥଟିର ସୁଶୋଭନ ପ୍ରକାଶ ପାଇଁ ଯତ୍ନ କରିଥିବାରୁ ମୋର ଅଶେଷ ଧନ୍ୟବାଦର ପାତ୍ର ।

ଶେଷରେ, ମୋର ବହୁ ସଂଖ୍ୟକ ଛାତ୍ର-ଛାତ୍ରୀଙ୍କ ଅନୁରୋଧ ଏବଂ ପ୍ରବର୍ତ୍ତନା ଫଳରେ ଏହି ସମ୍ପାଦନା କାର୍ଯ୍ୟଟି ସମାହିତ ହୋଇଥିବାରୁ ସେମାନଙ୍କ ପ୍ରତି ଗଭୀର ପ୍ରୀତି ଓ ଶୁଭେଚ୍ଛା ନିବେଦନ କରୁଛି । ଇତି

ରେଭେନ୍ସା କଲେଜ, କଟକ
୨୨ । ୪ । ୧୯୭୭

କୃଷ୍ଣଚରଣ ବେହେରା



କବିସୂର୍ଯ୍ୟ

ଆବିର୍ଭାବ—୧୮ଶ ଶତାବ୍ଦୀର ୮ମ/୯ମ ଦଶକ

ତିରୋଭାବ—୧୯ଶ ଶତାବ୍ଦୀର ୫ମ ଦଶକ

# କିଶୋରଚନ୍ଦ୍ରାନନ୍ଦ ଚମ୍ପୂ

—※—

### ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ

#### ମଙ୍ଗଳାଚରଣ

ତେନେ ଯେନେହ କୃଷ୍ଣାବସନବିତରଣୋଦ୍ଭବେ ଗୌଣି ପୁଣ୍ୟପୁଣ୍ୟଂ,
ପାର୍ଥାନର୍ଥାନ୍ କୁରୂଣାମଧିପତିବିହିତାନ୍ ଯୋ ଜୁହାବାହବାଗ୍ନୌ ।
ଯତ୍ନାମତ୍ୟାନୟଦ୍ ଯୋ ଭୁବମମରତରୁଂ ସ୍ୱର୍ଗତୋଽନର୍ଗଳୌକାଃ,
ହନ୍ତାଦନ୍ତାବଳାଦେଃ ସ ପରମପୁରୁଷଃ ସନ୍ତତଃ ଶଂ ତନୋତୁ ।

କ୍ୱ ବସ୍ତୁ ସ୍ଫଟିକାନଟାଚରଣଲମ୍ପଟାର୍ଦ୍ଧିଦ୍ୱୟଂ,
ମହଃ କ୍ୱ ଚ ଲସନ୍ମହାରଜତକାନ୍ତିକୈରବଂ ପୁନଃ;
ତୟୋଃ କ୍ୱ ଘଟନାବଧୌ କବନକଳ୍ପନଂ ସ୍ୱଳ୍ପଧୀ—
ରହଂ କ୍ୱ ଚ କଥଂ ହଠାଦୁଦିତମୀଦୃଶଂ ସାହସଂ ।

କଥମହମିହ     ମହତମହମମତହାଦତଧର୍ମଚନ୍ଦ୍ରମଣିମୟୂଖସନ୍ଦୋହ-ସନ୍ଦୋହାଦରାଙ୍ଗନହତହୋ ବିହାରଶାଳିନୋ ମଧୁବ୍ରତ ମନଧୀ ବଧୂଦିତନ୍ୟାୟ୍ୟାନ୍ୱୟା-ସିଦ୍ଧାନ୍ତତସ୍ୟ ସର୍ବେଶ୍ୱରସ୍ୟ ଶ୍ରୀନନ୍ଦନନ୍ଦନସ୍ୟାଂଶ୍ରିତପୋମଣ୍ଡଲପିଚଣ୍ଡିଲୀକୃତା-ନେକାନେହସୋ ଭଗବତୋ ମାର୍ତ୍ତଣ୍ଡସ୍ୟ ସଂକୃତକୃତାବତାରସ୍ୟ ରଧସ୍ୟ ସ୍ୱଲୀଳାଂ ଲୋକୋତ୍ତରାମଲ୍ପଧୀର୍ଜଲ୍ପାମୀତି କବକ୍ଷି ନ୍ୟୁମାସ ।

---

### ଶ୍ରୀ ରାଧାକୃଷ୍ଣଙ୍କୁ ନମସ୍କାର

ଅନୁବାଦ—କୁରୁସଭାରେ ଦୁଃଶାସନ ବସ୍ତ୍ର ଆକର୍ଷଣ କରନ୍ତେ ଦ୍ରୌପଦୀଙ୍କୁ ବସ୍ତ୍ର ଦାନ କରି ଯେ ଏହି ସଂସାରରେ ପୁଣ୍ୟକୀର୍ତ୍ତି ବିସ୍ତାର କରିଥିଲେ, ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ଯେଉଁ ସବୁ ଅନିଷ୍ଟ କରିଥିଲା, ସେ ସବୁକୁ ଯେ କୁରୁକ୍ଷେତ୍ର ଯୁଦ୍ଧାଗ୍ନିରେ ଆହୁତିରୂପେ ପ୍ରଦାନ କରିଥିଲେ, ସ୍ୱପତ୍ନୀ ସତ୍ୟଭାମାଙ୍କ ଅନୁରୋଧରେ ଯେ ପାରିଜାତ ବୃକ୍ଷକୁ ସ୍ୱର୍ଗରୁ ଭୂଲୋକକୁ ଆଣିଥିଲେ, କୁମ୍ଭୀରଦ୍ୱାରା ଆକ୍ରାନ୍ତ ହୋଇଥିବା ଗଜରାଜକୁ ଯେ ଉଦ୍ଧାର କରିଥିଲେ, ସେହି ପରମପୁରୁଷ ଶ୍ରୀକୃଷ୍ଣ ସର୍ବଦା ମଙ୍ଗଳ ବିସ୍ତାର କରନ୍ତୁ !

# କ

ରାଗ—ସାବେରୀ

କି ହେଲା ରେ, କହିବି ନୁହଇ ଭାରତୀରେ,
କାଲି ଯା ଦୂରରୁ ଦେଖି, * କଳନା କଲା ମୋ ଆଖି
କଳା ଇନ୍ଦୀବର ଆରତିରେ । ପଦ ।
କେଳି କଦମ୍ବ ଲତାର କୋଳେ କି ଶ୍ୟାମଳତାର,
ତେଜ ସେ ରବିସୁତାର ତୀରେ,
କର୍ଷି ମୋର କଳେବର, ହୋଇଗଲା ଆରପାର,
ଯାହାକୁ ଡରଇ ତାର ତୀରେ । ୧ ।

---

ଯାହାଙ୍କର ଚରଣଦ୍ୱୟ କାଳୀୟ ସର୍ପର ଫଣାରେ ନୃତ୍ୟ କରିବାରେ ନିପୁଣ, ସେହି ପରଂବ୍ରହ୍ମରୂପୀ ଶ୍ରୀକୃଷ୍ଣ କେଉଁଠାରେ, ସୁବର୍ଣ୍ଣ ତେଜକୁ ଜୟ କରୁଥିବା ପ୍ରକୃତିରୂପିଣୀ ରାଧିକାଙ୍କର ସମୁଜ୍ଜ୍ୱଳ ଜ୍ୟୋତି ବା ପୁଣି କେଉଁଠାରେ ‘ ସେ ଦୁହିଙ୍କର ମିଳନାତ୍ମକ ଚମ୍ପୂକାବ୍ୟ ନିର୍ମାଣରେ କବିତ୍ୱକଳ୍ପନା ବା କେଉଁଠାରେ ? କ୍ଷୀଣବୁଦ୍ଧି ମୁଁ ବା କେଉଁଠାରେ ? ହଠାତ୍ କାହିଁକି ମୋର ଏପରି କାର୍ଯ୍ୟରେ ପ୍ରବୃତ୍ତ ହେବାରେ ସାହସ ହେଲା !

ପୂର୍ବ କାଳରେ ସୂର୍ଯ୍ୟ ପ୍ରକୃତିଙ୍କୁ କନ୍ୟାରୂପରେ ପାଇବା ପାଇଁ ଦୀର୍ଘ କାଳ ତପସ୍ୟା କରିଥିଲେ; ଶ୍ରୀକୃଷ୍ଣ ଯେତେବେଳେ ଭୂଲୋକରେ ଅବତାର ଧାରଣ କଲେ, ତତ୍ପୂର୍ବରୁ ସୂର୍ଯ୍ୟ ବୃଷଭାନୁରୂପରେ ଜାତ ହୋଇଥିଲେ, ପ୍ରକୃତି ରାଧାରୂପରେ ତାହାଙ୍କର କନ୍ୟା; ଯେ ମହାମହିମାଶାଳୀ, ଯାହାଙ୍କ ଦେହକାନ୍ତି ଇନ୍ଦ୍ରନୀଳମଣି ତେଜ ପରି, ମନୋହର ବସନ୍ତ ଋତୁରେ ଭ୍ରମଣ କଲାବେଳେ ସହସ୍ର ଗୋପବଧୂମାନେ ଯାହାଙ୍କୁ ସର୍ବେଶ୍ୱର ବୋଲି ଜାଣିପାରି ଆତ୍ମସମର୍ପଣ କରିଥିଲେ, ସେହି ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କର ରାଧାଙ୍କ ସଙ୍ଗେ ଯେଉଁ ଅଲୌକିକ ଲୀଳା ହୋଇଥିଲା, ମୁଁ ସାମାନ୍ୟ ବୁଦ୍ଧିରେ ତାହା କିପରି ବର୍ଣ୍ଣନା କରିବି ? କବି ଏହିପରି ଚିନ୍ତା କରିଥିଲେ ।

—*—

* ପାଠାନ୍ତର—କାଲି ଯା ଦୂରରୁ ସଖି ।

(କ) ଭାରତୀରେ—କଥାରେ; କଳନା କଲା—ଠଉରାଇଲା; ଇନ୍ଦୀବର—ପଦ୍ମ; ଆରତିରେ—ନିବୃତ୍ତି ଅବସ୍ଥାରେ; ଶ୍ୟାମଳତା—ଶ୍ୟାମଳତ୍ୱ ବା କାଳିମା; ରବିସୁତା—ଯମୁନା; ଆରପାର—ଅସ୍ତବ୍ୟସ୍ତ; ଯାହାକୁ—କନ୍ଦର୍ପ ଅର୍ଥରେ, ତୀରେ—ବାଣରେ; କର୍କଶ ନୋହିବା—କୋମଳ; ଭରତ—ଶର ରଖିବା ମୁଣା, ତୂଣୀର; ମନ୍ଥା—ଆନ୍ତରିକ ଇଚ୍ଛା; କଳାକର—ଚନ୍ଦ୍ର; କୁସ୍ତା—ନିନ୍ଦା, ଚରିଷ୍ଣୁ—ଦୀପକାବଳୀ; ଜରତୀ—ବୃଦ୍ଧା (ରାଧାଙ୍କ

କୁସୁମ କୋଦଣ୍ଡ କାଣ୍ଡ ନେତେ କରିଥିଲା ଦ୍ୱନ୍ଦ୍ୱ,
କର୍କଶ-କୋହ୍ୱବା ଘାତରେ,
କହୁଛି ଦ୍ୱିରଜ ଲଜ୍ଜା, କେବଳ ହେଲା ମୋ ମଜ୍ଜା,
ମଜ୍ଜିଯିବ କି ଉଦ୍ଧ-ରତରେ । ୧ ।

କି ମୋହନ ଲୀଳା ଧରି କୋଟି କଳାକର ଶିଷ୍ୟ,
ପୂରୁଛି ସେ ଶ୍ୟାମ ମୂରତରେ,
କୁହା କରେ ମୁଁ ଧାତାକୁ, କାହିଁକି ସରଜି ତାକୁ,
ଚକ୍ଷୁ ରଖିଲା ଜରଖରେ । ୩ ।

କି ମତି କି ଜାତିଶୀଳ, କି କୁଳ ବରତ ଫଳ,
ଠଉର ପାରଲା ମୋ ମତରେ ?
କୋମଳତର ମୋହନ କୁଞ୍ଜକୁକ୍ଷିରୁ ନିଃସ୍ୱନ
ଆସି ରମ୍ଭିଦେଲା ମୋ ଶ୍ରୁତରେ । ୪ ।

କଳବଳ ଛଟପଟ ହୋଇ ଯାଉଛି ନିପଟ
ସଂବେଶ-ଅଶନ-ବରତରେ,
କହଇ ଶ୍ରୀ ବାଳୁକେଶ, ଶରଣ-ଧରଣୀଈଶ,
ଏ କି ଦଣ୍ଡ ଦ୍ୱିନା ପୀରତରେ । ୫ ।

(କ) ନାଦଃ କୋଽପି ନିତମ୍ବିନୀଜନମନଃ କ୍ଷୋଭକ୍ଷମଃ ଶୁଶ୍ରୁବେ,
କାନ୍ତିଃ କାପି ଚକାସ୍ତି କଳାପମୁକୁଟାଲମ୍ବା ଚ୍ୟୁତମ୍ବାମ୍ବକେ,
ସ୍ଥୈର୍ଯ୍ୟଂ ତତ୍ ପ୍ରଭୃତି ସ୍ଖଳତ୍ୟପି ବଳତ୍ୟନ୍ତର୍ବିଳାପୋ ବଳା-
ଦଶ୍ରାନ୍ତଂ ସଖି ଦୃଶ୍ୟତେ କିମଭତୋ ମାହେନ୍ଦ୍ରଜାଳଂ ମହଃ ।

ସଖି ! ଶିଖଣ୍ଡାପୀଡ଼ମନୋହରଃ ପ୍ରତ୍ୟଗ୍ରମୁଦିରମେଦୁରଃ ସମୁତ୍କଣ୍ଠ-ନଟନାଟୋପପଟୁଃ କୋଽପି ସମୂହୋ ମହସାମ୍ମଳଃ ସମାଲୋକି ମୟୈତ୍ୟୁକ୍ତ-ବତ୍ୟା ଶ୍ରୀମତ୍ୟା ତାଂ ପ୍ରତି ଲଳିତା ।

---

ଶାଶୁବୃଡ଼ୀ ଜଟିଳା); କୁକ୍ଷି— ପେଟ, ଗର୍ଭ; ଶ୍ରୁତ— କାନ; ନିପଟ—ଏକାନ୍ତ; ସଂବେଶ—ନିଦ୍ରା; ଅଶନ— ଭୋଜନ; ବରତ—ଅଭ୍ୟାସ; ଶରଣଧରଣୀ ଈଶ— ଆଠଗଡ଼ ରାଜ୍ୟର (ଗଞ୍ଜାମ ଜିଲାର ଆଠଗଡ଼ରେ ବିପଦବେଳେ ପୁରୀର ରାଜା ଜଗନ୍ନାଥଙ୍କ ସହ ଶରଣ ନେଇଥିବାରୁ ଆଠଗଡ଼ 'ଶରଣରାଜ୍ୟ' ନାମରେ ଅଭିହିତ ହୁଏ । )

ଅନୁବାଦ—(କ) ହେ ସଖି, ଯୁବତୀମାନଙ୍କର ଚିତ୍ତବିକ୍ଷେପକାରୀ ସେହି ଅନିର୍ବଚନୀୟ ବଂଶୀଧ୍ୱନି ଶୁଣିଲାବେଳୁଁ ଏବଂ ତାଙ୍କର ଚଞ୍ଚଳ ମୟୂରପୁଚ୍ଛ ମୁକୁଟରୁ

# ଖ

ରାଗ—କେଦାର

ଖଗ୍‌ପ ତୁ ହେଲୁ ରେ,
ଖେଳନ୍ଲୋଳଖଞ୍ଜନାକ୍ଷି କି ସାହସ କଲୁ ରେ । ଘୋ ।
ଖର୍ବ ହୋଇ ସୁରତରୁକୁସୁମ ବାଞ୍ଛିଲୁ ରେ,
ଖେଦବୀଜ ନିଜ ହୃଦ-କେଦାରେ ବୁଣିଲୁ ରେ । ୧ ।
ଖିଆଲ ପର କି ଧନ ମନରେ ଭଜିଲୁ ରେ,
ଖଳକାର ନୋହି କଳା ନାଗକୁ ଗୃହିଲୁ ରେ, । ୨ ।
ଖର୍ବ ସ୍ବର ଝିଁଙ୍କାରବା ଶ୍ରୀଅଙ୍ଗ ପାଇଲୁ ରେ,
ଖମଣିମଣ୍ଡଳକୁ ତୁ କର ବଢ଼ାଇଲୁ ରେ । ୩ ।
ଖାଇ ଦେଇ କି ଅମଳ ଅଚେତା ହୋଇଲୁ ରେ,
ଖାର ଖଣ୍ଡାଧାର ଖଟ ବଗୃର ଶୋଇଲୁ ରେ । ୪ ।
ଖଟେ ଅଷ୍ଟଦୁର୍ଗନାଥ ତୋ ପଦେ ପଶିଲୁ ରେ,
ଖଣ୍ଡ କରେ ଧନ ଦେଇ ପଦେ ନ କହିଲୁ ରେ । ୫ ।

(ଖ) ସ୍ପୃଷ୍ଟ୍ବା ଚଞ୍ଚଳଚନ୍ଦ୍ରକାଞ୍ଚଳ ଚମତ୍କାରଂ ଚକ୍ଷୁଷା,
କାବାସ୍ମିନ୍ ପୁଟଭେଦନେ ନବବଧୂରେକାପି ଶୋକା ଭବେତ୍ ।
ବାଳେ ନୃତନସୃଷ୍ଟିକାଳସ୍ମରତେୌ କାଳେଽପି ତାଦୃଗ୍ ବକ୍ଷ—
ହ୍ୟଂସାମର୍ଥ୍ୟନୁଭୂୟ ଲୋକବଚସଃ କିଂ ସାହସଂ ସ୍ବୀକୃତଂ ।

ହନ୍ତହନ୍ତାତିକାନ୍ତାତ୍ୟନ୍ତବହିର୍ଗବନସ୍ୟ ଲୋକାତିଗଲୀଳାଲୋଳଲୋଚନସ୍ୟ ଭବତ୍ୟା ସୁବର୍ଣ୍ଣଜାନୁପାଣିକୃତ୍ୟାଭିଶସ୍ୟଧାଡନି ଶିଖଣ୍ଡଶେଖରେ ନଟପଟ୍ଟନ ତମାଳମାଳମେଚକେ ମଧୁପିଁ ବ୍ୟରଚି ସାପେକ୍ଷ କଟାକ୍ଷନିକ୍ଷେପବଳାପଃ ।

---

ବାହାରୁଥିବା ମନୋହର ତେଜ ମୋ ଚକ୍ଷୁକୁ ସ୍ପର୍ଶ କଲବେଳୁ ମୁଁ ଏକାନ୍ତ ଅଧୀର ହୋଇ ପଡ଼ିଅଛୁ ଏବଂ ମୋ ଅନ୍ତରରେ ଘୋର ଦୁଃଖ ବଢ଼ୁଅଛୁ, ସର୍ବଦା ଗୃହଥାଉଁ ଇନ୍ଦ୍ରନୀଳମଣିର ଗୋଟିଏ ବଚନ ତେଜ ମୋତେ ଦେଖାଯାଉଅଛୁ ।

ହେ ସଖି, ମୟୂରପୁଚ୍ଛମୁକୁଟ ଅଙ୍ଗରେ ସୁନ୍ଦର ଦିଶୁଥିବା ଏବଂ ନବ ମେଘ ପରି ସ୍ନିଗ୍ଧ କି ବଚନ ତେଜ ଦେଖିଲି ! ଆହା ! ଉଦ୍ଦଣ୍ଡନୃତ୍ୟାଡ଼ମ୍ବରରେ ତାହା ପୁଣି କେଡ଼େ ନିପୁଣ ଦିଶୁଥିଲା । ଶ୍ରୀମତୀ ଏହା କହନ୍ତେ ଲଳିତା ତାଙ୍କୁ ପ୍ରତ୍ୟୁତ୍ତରରେ କହୁଅଛନ୍ତି— "ଖଗ୍‌ପ ତୁ ହେଲୁ ରେ" ଇତ୍ୟାଦି ।

---

# ଗ

## ରାଗ—ତୋଡ଼ି ପରଜ

ଗଲାଣି ତ ଗଲା କଥାରେ ସଙ୍ଗାତ
ରୂପରେ ମିଳା ମୁଁ ନେତ୍ରେ ଫଗୁଣିଲ ବଳ ପଡ଼ିବାରୁ ବ୍ୟଥା । ପଦ ।
ଗଳାଣି ବିଶଦ ଗମ୍ଭୀର ମୋ ହ୍ରଦ, ଗଣ୍ଠିଧନ ତୋର ସ୍ନେହ,
ଚୋରି ଝସି ଖେଦ ହେବାର ଦରଦ ମିଳିବାର ଉପାୟ କହ । ୧ ।
ଗଞ୍ଜାଇଲ ଛଳି ଲାଗି ତାର ପୁଣି ରଞ୍ଜାଇଲା ମନେ ପଶି,
ଗୋଳା ଗରଳରୁ କଟୁ ପୀୟୂଷରୁ ସ୍ୱାଦୁଗୁଣ ଗଲା ବଳି । ୨ ।

---

(ଖ) ଖେଳନ୍ତେ ଲୋଳ ଖଞ୍ଜନାକ୍ଷି—କ୍ରୀଡ଼ାରେ ଚଞ୍ଚଳ ହୋଇଥିବା ଖଞ୍ଜନ ନାମକ ପକ୍ଷୀର ଆଖି ପରି ଆଖି ଯାହାର; ଖର୍ବ—ବାଙ୍ଗର, ସାନ; ସୁରତରୁକୁସୁମ—କଳ୍ପବୃକ୍ଷଫୁଲ, ଖେଦବୀଜ—ଦୁଃଖର ବୀଜ (ମଞ୍ଜି); ଖେଦାର—କିଆରି. ଖିଆଲ—ଅଜ୍ଞା, ପରିହାସ; ଖଳକାର—ସାପୁଆ, ଖମଣି—ସୂର୍ଯ୍ୟ, ଅମଳ—ନିଶା, ଖର ଖଣ୍ଡାଧାର—ସୁତୀକ୍ଷ୍ଣ ଖଡ଼୍‌ଗର ଧାର, ଅଷ୍ଟବର୍ଗନାଥ—ଆଠଗଡ଼ ରାଜା, ଖଣ୍ଡ—ଉଦାସୀନ ।

ଅନୁବାଦ—(ଖ) ଏ ଗୋପପୁରରେ କେଉଁ ନବବଧୂ ତାଙ୍କର ମୁକୁଟସ୍ଥିତ ଚଞ୍ଚଳ ମୟୂରପୁଚ୍ଛ ଚନ୍ଦ୍ରିକାର ମନୋହର ଗଠନକୁ ଆଖିରେ ଦେଖି ଶୋକାକୁଳ ନ ହୋଇ ରହୁଛନ୍ତି ? ହେ ବାଳେ, ଶୈଶବକାଳରେ ଖେଳିବା ସମୟରେ ସେହି କୃଷ୍ଣ ପରା ପୂତନାର ପ୍ରାଣ ହରଣ କରିଥିଲେ. ଏ କଥା ଲୋକଙ୍କ ମୁହଁରୁ ଶୁଣି ତୁମ୍ଭ କପଟ ସାହସ କଲୁ ? (ଯେ ଅତି ପିଲାବେଳେ ଗୋଟିଏ ପ୍ରୌଢ଼ା ସ୍ତ୍ରୀକୁ ହତ୍ୟା କରିଥିଲେ, ଏ ବୟସରେ ଯେ ସେ ତୋପରି ବାଳିକାକୁ ଅକ୍ଳେଶରେ ହତ୍ୟା କରିପାରିବେ ଏହା ନିଃସନ୍ଦେହ, ଏହା ଜାଣି ତୁମ୍ଭ କପଟ ତାଙ୍କ ଆଡ଼କୁ ଚାହିଁଲୁ ? )

ଅହୋ, କି ଦୁଃଖର କଥା ! ତୁ ପ୍ରିୟଜନଙ୍କର କଥା ନ ମାନି, ଯେଉଁ ଲୋକ ଯୁବତୀମାନଙ୍କ ସତୀତ୍ୱ ନଷ୍ଟ କରିବାରେ ସୁଦକ୍ଷ, ସେହି ସ୍ନିଗ୍ଧନୀଳକାନ୍ତି ମୟୂରପୁଚ୍ଛଧାରୀ ନିତ୍ୟନୂତନ ଶ୍ରୀକୃଷ୍ଣଙ୍କ ଆଡ଼କୁ ମନୋହର ଭ୍ରୂଭଙ୍ଗୀ ସହ ସାଭିଳାଷ ଦୃଷ୍ଟିପାତ କଲୁ !

ଏହା ଶୁଣି ରାଧା ଦୂତୀଙ୍କୁ କହୁଛନ୍ତି—

"ଗଲାଣି ତ ଗଲା କଥାରେ" ଇତ୍ୟାଦି ।

—*—

(ଗ) ବିଶଦ—ନିର୍ମଳ; ଗଣ୍ଠିଧନ—ଅତି ଯତ୍ନରେ ରଖିଥିବା ସମ୍ପତ୍ତି; ଖେଦ—ଦୁଃଖ, ଦରଦ—ଦରଳ, ପ୍ରେମ; ଲ[illegible]—ନିଶା, ମାଦକତା; ରଞ୍ଜାଇଲା—ମୋହିତ କଲା; ପଶି—ପ୍ରବେଶ କରି; ଗୋଳା ଗରଳ—ତରଳ ବିଷ; ପୀୟୂଷ—ଅମୃତ; ଗୋଳିଦେଲ—

ଗୋଲ ଦେଲ୍ ମୋର ବାହାର ଭିତର ସ୍ୱର ସେ ଅବା ଶର ସେ,
ଗାତ୍ର ଗୋଟିଯାକ ପୂରିଲ୍ ପୁଲକ ଶ୍ରବଣ ସୀମା ସ୍ପରଶେ । ୩ ।
ଗିଳିଦେଲ୍ ପୁରନ୍ଦର-ନୀଳକର-କଳିକାମୟ ତିମିର,
ଗହନ କି ଗୃହ ହୋଇଲ୍ ସନ୍ଦେହ ନଷ୍ଟପ୍ରାୟ ହୋଇ ବିଦୂର । ୪ ।
ଗତାଳସନାଟପଟୁ ଖଞ୍ଜଗିଟ ପରି କି ଆସିଲ୍ ଉଡ଼ି,
ଗଣ୍ଡି-ଗର୍ବେ ଶୁକ ଗଲ୍ ପରି ଗଳି ବିବେକ ଦେଲ୍ ଘଉଡ଼ି । ୫ ।
ଗଗନ-କୁସୁମ ପରି ଏଥି ଶ୍ରମ ଫଳ ହୋଇବ କି କାଳେ,
ଗୋଲିଆ ନ ରଖି କହ ଚନ୍ଦ୍ରମୁଖି ଗହଳ ନ ଥିବା ବେଳେ । ୬ ।
ଗରିଷ୍ଠ ଅରୁଚି କାହିଁକି ଜରୁଚି ଅଶନେ ବସନେ ଦେହେ,
ଗୁରୁଜନତତି ଜାଣିଲେ କି ଗତି ଅଷ୍ଟାଦୁର୍ଗପତି କହେ । ୭ ।

(ଗ) ସ୍ୱାଭିନ୍ନେ ସଖି ମୁଞ୍ଚ ମାଦୃଶି ଜନେ ତ୍ୱଂ ବଞ୍ଚନାନାଂ ଚୟମ୍,
ନାଖ୍ୟାତାନବଧାନତାଗ୍ରହିଳତା ନର୍ମାତି ଶର୍ମାମୁନଃ ।
ଜ୍ଞାନାଦ୍ ବା ତଦଜ୍ଞଭବତଃ ପଥି ରସେନାର୍ଦ୍ରାନ୍ତରେ ବନ୍ଧୁରେ,
ସମ୍ପାତୋଭିବହନ୍ଦ୍‌ବ୍ୟଥାଂ ହର ପରାମୋଦଂ ଚ ନୋଦଞ୍ଚୟ ॥

ଜ୍ଞାନେନ ବାଜ୍ଞାନେନ ପ୍ରଣୀତସ୍ୟାଖ୍ୟାତସ୍ୟାପରାଧସ୍ୟ ସ୍ମାରଣଶର-ବିସରାସାରପ୍ରୟୋଗଶୀର୍ଣ୍ଣସାରାଂ ମାରଶୁଗାଶୁଗବିଶେଷନିଃଶେଷସାମର୍ଥ୍ୟାଂ କମାଳ ମାଂ କଦର୍ଥୟସି ବ୍ୟର୍ଥମିତିଗଦିତବତ୍ୟାଂ ସାମିଗଳିତଧୈର୍ଯ୍ୟାୟାଂ କଶୋର୍ଯ୍ୟାଂ ପୁନସ୍ତାଂ ପ୍ରତି ସଖୀ ସାକୂତଂ ।

---

ଗିଳି ଦେଲ୍ ଅର୍ଥାତ୍ ଅଭିଭୂତ କରିଦେଲା; ଗାତ୍ର—ଦେହ, ଶ୍ରବଣସୀମା ସ୍ପରଶେ—କାନପାଖରେ ପହଞ୍ଚିଲାକ୍ଷଣି; ପୁରନ୍ଦର ନୀଳକର—ଇନ୍ଦ୍ରନୀଳମଣିର କିରଣ; କଳିକା—କଢ଼ (କବିମାନେ କିରଣକୁ କଳିକା ସଙ୍ଗେ ତୁଳନା କରନ୍ତି); ତିମିର—ଅନ୍ଧକାର; ଗହନ—ବନ; ନଷ୍ଟପ୍ରାୟ—ସନ୍ଦେହଶୂନ୍ୟ ଜ୍ଞାନ, ବିଦୂର—ବିଶେଷ ପରିମାଣରେ ଦୂରବର୍ତ୍ତୀ; ଗତାଳସ—ନିରଳସ; ନାଟପଟୁ—ନୃତ୍ୟନିପୁଣ; ଖଞ୍ଜଗିଟ—କଜଳପାତିଜାତୀୟ ଏକ ପ୍ରକାର ପକ୍ଷୀ; ଗଣ୍ଡୀ—ଶରୀର; ଗଗନକୁସୁମ—ଆକାଶ ଫୁଲ ଅର୍ଥାତ୍ ଅସମ୍ଭବ ବସ୍ତୁ; ଗୋଲିଆ—କପଟ; ଗହଳ—ଜନତା ବା ଲୋକଗହଳ; ଗରିଷ୍ଠ—ଅତ୍ୟନ୍ତ, ଅଧିକ; ଅଶନ—ଭୋଜନ; ବସନ—ବସ୍ତ୍ର; ଗୁରୁଜନତତି—ଗୁରୁଜନସମୂହ ।

ଅନୁବାଦ—(ଗ) ହେ ସଖି, ମୋପରି ଅଭିନ୍ନହୃଦୟ ବନ୍ଧୁକୁ ତୁ ପ୍ରତାରଣା କର ନା ଓ ମୋର ଅସାବଧାନତା କଥା ମୋତେ ଆଉ ବାରମ୍ବାର କହ ନା । ତାହା ସୁନ୍ଦର

# ଘ

ରାଗ—କାମୋଦୀ

ଘେନାଇ ଆମ୍ଭେ ଯେତେ କହିଲୁ ରେ, ଘେନିଲୁ ନାହିଁ ବାଳା ପହିଲୁ ରେ,
ଘୃତଘଟକୁ ଶିଖି-ଶିଖା ପାଖରେ ରଖି ଶିରିଷଦେହା ଏହା ସହିଲୁ ରେ । ଘାଦ ।
ଘସ୍ରନାଥନନ୍ଦନା ଅନାଉଣିକ ମନା କରୁଁ ଯେ ଥାଉଁ ହଠି ଗୃହିଲୁ ରେ,
ଘଟୀସରିକ କରେ ନାହିଁ କ ବିବେକରେ ମହାର୍ଣ୍ଣବରେ ଅବଗାହିଲୁ ରେ । ୧ ।
ଘୋଟି କତବମୂଳ ଘୋର ଘୋର ଜାଙ୍ଗଳ ଗରଳତୁଲେ ତାହା ପିଇଲୁ ରେ,
ଘୁମାଇବାର ସମ୍ଭବଲ ନାହିଁ କ ଆମ୍ଭ ସୁଯୋଗୁଁ ସିନା ବଞ୍ଚି ଅଇଲୁ ରେ । ୨ ।
ଘେନ ଘେନାଇ ଯାଇ କହିବା ସମଜାଇ ଘଟିଲେ ଆମ୍ଭେ ଏକ ଜାଇଲୁ ରେ,
ଘଟନା ବିରହରେ ଅବଶ୍ୟ ତ ଜହରେ ତୋ ଘେନ ଆତ୍ମଘାତି ହୋଇଲୁ ରେ ॥
ଘୋଳାରେ ପଛେ ମରୁ ଆଜ ତୋ ହୁକୁମରୁ ନକୁଞ୍ଜ ଦଉଡ଼ିକୁ ରହିଲୁ ରେ,
ଘାଣ୍ଟି ହେଉଛୁ ମାନ ଆମ୍ଭାଳଶତପବନେସା ଯା ଆମ୍ଭ ବଶ ନୋହିଲୁ ରେ ॥
ଘନେ ଚପଳାଲୀଳା ଗୃହିଁ ଘନକୁନ୍ତଳା ତୁ କ ଏ ଅଭିଳାଷ ବହିଲୁ ରେ,
ଘାରି ଦେଲୁ କ ରସେ ଅଷ୍ଟଦୁର୍ଗେଶ ଭାଷେ ଅବଶ୍ୟ ମୋହନକୁ ମୋହିଲୁ ରେ ॥

(ଘ) ବନ୍ୟମାର୍ତ୍ତଣ୍ଡକନ୍ୟାତଟନିକଟଭୁବଃ ପ୍ରେଷଣଂ ନେତ୍ର ପଥ୍ୟଂ,
ଭୂୟୋଽସ୍ମାଭିଃ ପ୍ରଯୁକ୍ତା ଶ୍ରବସି ନ ଲଗିତା ତୁଚ୍ଛକୁଧାଚକଧା ।
ବୈଦେହ୍ୟ ସଦ୍ୟଃ ସମୁଦ୍ୟଦ୍‌ଗତଭୂତ୍ତି ଚତୁରେ ଯଦ୍ୟପେକ୍ଷାନବନ୍ଦ୍ୟ,
ଯାମଃ କାମସ୍ୟ ପୂର୍ତ୍ତୌ ଗତିରିହ ଜଗତଃ କେବଳଂ ତେଽବଳମ୍ବଃ ॥
ସ୍ୱାମିନ୍ୟନୁଜ୍ଞାନୁଲ୍ଲଙ୍ଘନଜଙ୍ଘାଳତୈବ ମାଦୃକ୍‌ପ୍ରିୟଜନପ୍ରଣୀତପ୍ରଯନ୍ନା-ନାମନୁପଧିକାପରିଣତିଃ ପରମେଶ୍ୱରାଧୀନଂ ତର୍କୟ୍ୟୋଦର୍କମିତ୍ୟୁକ୍ତ୍ୱା ଶ୍ରୀକୃଷ୍ଣାନ୍ତିକଂ ପ୍ରବିଶ୍ୟ ବିଜ୍ଞାପୟାମାସ ଲଳିତା ।

---

ବୋଧ ହେଉ ନାହିଁ । ଜାଣି ଜାଣି ହେଉ ବା ଅଜଣାରେ ହେଉ ଖାଲ ଢିପ କସରିଆ ବାଟରେ ଚାଲିବାରୁ ଗୋଡ଼ ଖସି ହୃଦୟରେ ବଡ଼ ବ୍ୟଥା ହୋଇଅଛି, ସେ ବ୍ୟଥାକୁ ଦୂର କର ଏବଂ ଶତ୍ରୁମାନଙ୍କର ଆନନ୍ଦ ବଢ଼ା ନା ।

ଜ୍ଞାନରେ ବା ଅଜ୍ଞାନରେ ଯେଉଁ ଅପରାଧ କରିଅଛୁ, ପୁନଃପୁନଃ ସ୍ମରଣ କରାଇବାରୁ ତାହା ବାଣ ପରି ମୋ ଶରୀରରେ ପ୍ରବେଶ କରି ତାହାକୁ ଶୀର୍ଣ୍ଣ କରିଦେଲଣି, ତା ଉପରେ ପୁଣି କନ୍ଦର୍ପ ତୀକ୍ଷ୍ଣ ଶର ମାରି ମୋର ସବୁ ଶକ୍ତିକୁ ଅପହରଣ କରି ସାରିଅଛୁ । ଏପରି ଅବସ୍ଥାରେ ତୁ ଆଉ କାହିଁକି ମୋତେ ଏପରି କଦର୍ଥନା କରୁଛୁ ? ରାଧାଙ୍କର ଧୈର୍ଯ୍ୟ

ଓଁ

ରାଗ—ସିନ୍ଧୁକାମୋଦୀ ବା କୁମ୍ଭକାମୋଦୀ

ନୂଆନଟଚଟଳୀମୁକୁଟ ହେ ନାହିଁ କି ଶ୍ରୀଅଙ୍ଗ ସୁଖ,
କପଟ କଂସେନ୍ଦ୍ର ଦସ୍ୟୁ ଛନ୍ତି ତ ଆଜ କରାଳସ ଚନ୍ଦ୍ରମୁଖ । ପଦ ।
କଣ୍ଟକାକୁଳ ବାଟି ହେଲ ପରି ଦିଶି ଯାଉଛି ଦୂରୁ ଶ୍ରୀଅଙ୍ଗ,
ନାସା ଜଳ ତିଳଫୁଲରୁ ଅନିଳ ପ୍ରସରୁଛି ବେଗ ବେଗ । ୧ ।
ଶୀପଉପବନ ନିକଟ ପବନ ସ୍ପର୍ଶରୁ ଯେବେ ଡର,
ନଖାକୂଳସ୍ଥଳ ଏ ବଡ଼ ଶୀତଳ ନୁହନ୍ତି ଟିକି ବହାର । ୨ ।
ନିଦ ନାହିଁ କି ନୟନେ କିଶି ଦିନ ଆହା ମରଇ ମୋ ଧନ,
ନବନୀତ ଠାରୁଁ ମୃଦୁ ଦେହେ କାହୁଁ ସମ୍ଭବିଲ ଏ କଦନ । ୩ ।
ନବ ଚନ୍ଦନମଦୂଷିତ ଅମଙ୍ଗ ଏ କାତ ନଅନ୍ତୁ ଫୁଲ ଏ ବନୁ,
ଚନ୍ଦନପଥ ପଡ଼ିଗଲେ କି ସେ ଗୁଡ଼ି ଯାଉ ନାହିଁ ଜ୍ୱର ମନୁ । ୪ ।
ନ ବହର ଗୋପସଙ୍ଗାଳି ଏ ଚାପଗହନରେ କତି ଦିନ,
ନରେଶମନ୍ତ୍ରୀଜ ଶ୍ରୀହରିଚନ୍ଦନ ଜଗଦ୍ଦେବ ସ୍ତବ ଘେନ । ୫ ।

(ଙ) ହା ହା ହନ୍ତ ହତାସ୍ମି କେନ ବଲଯନ୍ନୀଲାଶ୍ମତେଜୋଧଟା।
ଧୂର୍ଯ୍ୟଂ ପର୍ଯ୍ୟସ୍ତିତୋତ୍ପଳାବଳିରୁଚ୍ଚୈ ମାସୀନ୍ନିର୍ଧ୍ୱସ୍ତେ ବପୁଃ ।
ନାସ୍ତ କ୍ରୀଡ଼ଯୁ ପଞ୍ଚଶାଣ୍ୟପି ଦିନାନ୍ୟମ୍ଭୋରୁହାକ୍ଷାର୍ଭକାନ୍,
ବାର୍ତ୍ତାଂ ନେଦଖଣ୍ଡଶୈତ୍ୟବଭବଂ ମାର୍ତ୍ତଣ୍ଡପୁତ୍ର୍ୟାସ୍ତଟଂ ॥

ଚନ୍ଦ୍ରକାପୀଡ଼ସୁନ୍ଦରେନ୍ଦ୍ର କିଶୋରଚକ୍ରଚୂଡ଼ାମଣେ ତାଦୃଙ୍ଗ୍‌ନିରଳସ କେଳିକଳାକଳାପଲ୍ଲଳନଲଳିତାପୁ ବପୁଷେ ଭବତୋ ଭବତି ନ କିଂ ହିତମାତ୍ରାନ୍ତଂ ବାହ୍ୟମାତଟପର୍ଯ୍ୟଟନଂ ।

---

ପ୍ରାୟଶଃ ନଷ୍ଟ ହୋଇ ଯାଇଥିଲ । ସେ ଏହିପରି କହି କରୁଥିବା ଭକ୍ତ ହୃଦୟରେ ଅଭିପ୍ରାୟ ରଖି ତାଙ୍କୁ କହୁଅଛନ୍ତି—"ଘେନାଇ ଆମ୍ଭେ ଯେତେ" ଇତ୍ୟାଦି ।

—*—

(ଘ) ଘେନାଇ—ବୁଝାଇ ; ଘେନିଲୁ ନାହିଁ—ଗ୍ରହଣ କଲୁ ନାହିଁ ; ପହିଲୁ—ପ୍ରଥମରୁ, ଦୃଢ଼ଘଟ— ଘିଅମାଠିଆ ; ଶିଖିଶିଖା—ଅଗ୍ନିଶିଖା ; ଶିରୀଷଦେହା—ଶିରୀଷ ଫୁଲ ପରି ଦେହ ଯାହାର, କୋମଳାଙ୍ଗୀ; ଦସ୍ରନାଥନନ୍ଦନା—ଦସ୍ରନାଥ ଅର୍ଥାତ୍ ଦିନନାଥ ସୂର୍ଯ୍ୟଙ୍କର ଝିଅ ଯମୁନା; ଅନାଉଣୀ—ଅନାଇବା, ଚାହିଁବା; ହଟି—ହଠ କରି, ଜିଦ ଧରି;

ଘଟୀସଂଘ—ମାଠିଆଟିଏ ମଧ୍ୟ; କରେ—ହାତରେ, ବିବେକ—ବିଚାର ବୁଦ୍ଧି; ମହାର୍ଣ୍ଣବ—ମହାସମୁଦ୍ର; ଅବଗାହିଲୁ—ବୁଡ଼ି ଦେଲୁ, କଣ୍ଟକ—ଧୁତୁରା; ଘୋର—ଭୟଙ୍କର; ଜାଙ୍ଗଳ—ଏକ ପ୍ରକାର ତୀବ୍ର ବିଷଯୁକ୍ତ ଜଙ୍ଗଲିଗଛ (ଲଙ୍ଗଳିଆ); ଗରଳ ଫୁଲେ—ବିଷ ଯାଙ୍ଗରେ; ସମଜାଇ—ବୁଝାଇ, ଦୋଳା—ଗୋପବନିତା; ନିକୁଞ୍ଜ—କୁଞ୍ଜବନ; ଗାଣ୍ଠି ହେଉଛୁଁ—କଷ୍ଟ ପାଉଅଛୁଁ; ଅମଳଶତପତ୍ରନେତ୍ର—(ଅମଳ, ମର୍ମାର୍ଥରୂପେ ନୀଳ), ଶତପତ୍ର—ପଦ୍ମ ଅର୍ଥାତ୍ ନୀଳପଦ୍ମ ପରି ନେତ୍ର ଯାହାର, ଦନେ—ମେଘରେ, ଚପଳାଳୀଳା—ବିଜୁଳି ଖେଳିବା; ବିଶଦେଲ—ଅଭିଭୂତ କରି ଦେଲୁ; ଘନକୁନ୍ତଳା—ଘନ ଅର୍ଥାତ୍ ମେଘ ପରି ଗାଢ଼ କୃଷ୍ଣବର୍ଣ୍ଣ କେଶ ଯାହାର; ମୋହନ—ଶ୍ରୀକୃଷ୍ଣ ।

ଅନୁବାଦ—(ଘ) ଯମୁନାନ୍ତଲବର୍ତ୍ତୀ ବନକୁ ଯିବା ତୁମ୍ଭ ପକ୍ଷରେ ହିତକର ନୁହେଁ, ଏହା ଆମ୍ଭେମାନେ ତୁମ୍ଭଙ୍କୁ ପୁନଃପୁନଃ କହିଲେହେଁ ତୁମ୍ଭେ ସେହି ହିତୋପଦେଶକୁ କାନରେ ଶୁଣିଲ ନାହିଁ । ଯେଉଁ ବୈଦ୍ୟ ରୋଗର ଆଶୁ ପ୍ରତିକାର ବିଧାନ କରି ପାରନ୍ତି, ସେଭଳି ବୈଦ୍ୟଠାରେ ତୁମ୍ଭର ଯେବେ ଅପେକ୍ଷା ଥାଏ, ତେବେ ଅମ୍ଭେମାନେ ବର୍ତ୍ତମାନ ତୁମ୍ଭ କାମନା ପୂରଣ କରିବା ପାଇଁ ଯାଉଅଛୁଁ । ଜଗତ୍କର୍ତ୍ତା ପରମେଶ୍ୱର ହିଁ ଏ ବିଷୟରେ ଏକା ତୁମ୍ଭର ପ୍ରଧାନ ଅବଲମ୍ବନ ।

ହେ କର୍ତ୍ତି_ ! ମୁଁ ତୁମ୍ଭର ପ୍ରିୟଜନ, ଏପରି ଅବସ୍ଥାରେ ତୁମ୍ଭର ଆଦେଶ ପାଳନ କରି ଶ୍ରୀକୃଷ୍ଣଙ୍କ ନିକଟକୁ ପୁନଃପୁନଃ ଯିବା ଆସିବା କରିବା ହିଁ ମୁଁ ମୋ କର୍ତ୍ତବ୍ୟର ନିଷ୍କପଟ ପରିଣାମ ବୋଲି ମନେ କରୁଅଛି । କିନ୍ତୁ ଏହାର ଉତ୍ତରଫଳ ଈଶ୍ୱରାଧୀନ । ଲଳିତା ଏହା କହି ଶ୍ରୀକୃଷ୍ଣଙ୍କ ନିକଟକୁ ଗମନ କଲେ ଏବଂ ତାଙ୍କୁ କହିବାକୁ ଆରମ୍ଭ କଲେ, "ନୃଆନଟ-ପଟଳୀମୁକୁଟ" ଇତ୍ୟାଦି ।

—※—

(ଙ) ନୃଆନଟପଟଳୀମୁକୁଟ—ନୂତନ ନର୍ତ୍ତକମାନଙ୍କ ବା ଦୁଷ୍ଟ ଟୋକାଙ୍କ ମଧ୍ୟରେ ଶ୍ରେଷ୍ଠ; ନିପଟ—ଅତ୍ୟନ୍ତ; ନିରଳସ—ଆଳସ୍ୟହୀନ ଅର୍ଥାତ୍ ମନୋହର; ନୀଳୋତ୍ପଳ—ନୀଳପଦ୍ମ; ବାସି—ମଉଳି ପଡ଼ିଥିବା (ମଳିନ ବିପରୀତ); ନୀଳ ଜଳଫୁଲ—ନେଳିଆ ରଙ୍ଗିଫୁଲ; ଅନିଳ—ପବନ, ନିଶ୍ୱାସ; ପ୍ରସରୁଛି—ବାହାରୁଛି, ବେଗ ବେଗ—ଅତି ଚଞ୍ଚଳ; ନୀପ ଉପବନ—କଦମ୍ବ ବଗିଚା; ନବନୀତ—ଲହୁଣୀ; ତହୁଁ—ଠାରୁ; ମୃଦୁ—କୋମଳ, କଦନ—କଷ୍ଟ, ଯନ୍ତ୍ରଣା; ନବହେମଦ୍ୟୁତି—ଯେଉଁମାନଙ୍କ ଦେହଶୋଭା ନୂତନ ସୁନା ପରି ଉଜ୍ଜ୍ୱଳ; ଅମରୀଏ—ଅପ୍ସରାମାନେ; ଜ୍ୱର—ସନ୍ତାପ; ଗୋପସଙ୍ଗାଳି—ଗୋପନଗରର ସର୍ବସ୍ୱ; ଗହନରେ—ବନରେ; ନରେଶମଣ୍ଡନ—ନୃପତିଶ୍ରେଷ୍ଠ ।

ଅନୁବାଦ—(ଙ) ଆହା, ତୁମ୍ଭର ଯେଉଁ ଶରୀର ଇନ୍ଦ୍ରନୀଳମଣିର ତେଜ ଧାରଣ କରି ମନୋହରଣ କରୁଥିଲା, ଆଜି ତାହା କାହିଁକି ବାସି ନୀଳକଇଁ ପରି ଏଭଳି ମଳିନ ଦିଶୁଛି, ଏହା ଦେଖି ମୋ ମନରେ ବଡ଼ କଷ୍ଟ ହେଉଅଛି; ହେ ପଦ୍ମଲୋଚନ, ଏଠାରେ ପାଞ୍ଚ ଛଅ

※



ରାଗ—ପଞ୍ଚମ ବରାଡ଼ି

ଚାହିଁ ଚାହିଁ ତୋ ସରଣୀ କକୁଭକୁ ରେ ତରୁଣି ଚନ୍ଦ୍ରାର୍ପିତ ପରି ଥିଲି ବସି । ଚନ୍ଦ ମଣିଲି ମୁଁ ତତେ, ଚାହିଁ ଯା ଅତର୍କିତେ ଚାରୁଚନ୍ଦ୍ର ମିଶାଇଲୁ ଆସି ରେ, ଚଳାପାଙ୍ଗି, ଚନ୍ଦ୍ରରୁ ଚପୁଡ଼ି ସୁଧା ଝର, ଚରଣ୍ଡିତର ମୁଚଖ ଭରି, ଚାତୁର୍ଯ୍ୟ କୃପାଳୁ ଗୁଣନିଧି ରଖିଲୁ କି ପ୍ରାଣ ଘେନଲି ମୁଁ ଏତେ ସରି କରି ରେ । ୧ ।

ଚେତା ଥିଲି ପରି କଣ୍ଟ ପ୍ରଣୀତ ହେଉଅଛି, ଚକ୍‌କଣ ତ ଦିଶୁଛି ମୋ ଦେହ । ଚନ୍ଦ୍ରିକି ଲାଞ୍ଛନ ସତେ ଚାମରଚିକୁରା ମୋତେ ଚହକାଇ ପଚାରିଲୁ କହ ରେ, ଚଳାପାଙ୍ଗି, ଚୁମ୍ବି ରବିନନ୍ଦନାର ନୀର, ଚନ୍ଦ୍ରିକାଚୟ ତୁଷାର ସାର; ଚାରୁ ମାରୁତରୁ ତରୁତଳ ଶୀତଳ ହେତୁରୁ, ଚିନାଏ ତ ଖେଦ ନାହିଁ ମୋର ରେ । ୨ ।

---

ବନ ଆଉ ଗୋପ ବାଳକମାନଙ୍କୁ ଖେଳାଅ ନାହିଁ, କାରଣ ଏ ଯମୁନା ନଦୀକୂଳରେ ଭାରି ଶୀତ, ଏହା ତୁମ୍ଭ ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ନୁହେ ।

ହେ ଚନ୍ଦ୍ରକଚୂଳ, ହେ ସୁନ୍ଦର ଯୁବକଶ୍ରେଷ୍ଠ, ତୁମ୍ଭ ଶରୀର ମନୋହର ବାଲ୍ୟରେ ସର୍ବଦା ଅତୀବ ସୁକୁମାର, ଯମୁନାକୂଳରେ ନିରନ୍ତର ଭ୍ରମଣ କରିବାଟା ତୁମ୍ଭର ସେହି ସୁକୁମାର ଶରୀର ପକ୍ଷରେ ହିତକର ହେଉ ନାହିଁ ପରା ! ଲଳିତାଙ୍କଠାରୁ ଏହି କଥା ଶୁଣି ଶ୍ରୀକୃଷ୍ଣ ତାଙ୍କୁ କହିଛନ୍ତି :—

"ଚାହିଁ ଚାହିଁ ତୋ ସରଣୀ" ଇତ୍ୟାଦି



(ଚ) ସରଣୀ—ମାର୍ଗ, ବାଟ; କକୁଭ—ଦିଗ; ଚନ୍ଦ୍ରାର୍ପିତ—ଚନ୍ଦ୍ରରେ ଅଙ୍କିତ ପିତୁଳା; ଚନ୍ଦ—ଆଶ୍ଚର୍ଯ୍ୟ; ଅତର୍କିତେ—ଅଜ୍ଞାତଭାବରେ, ଚଳାପାଙ୍ଗୀ—ଚଞ୍ଚଳନେତ୍ରା; ସୁଧାଝର—ଅମୃତର ସୁଅରଇ, (ପାନବିଶେଷ); ଚାତୁର୍ଯ୍ୟ କୃପାଳୁ ଗୁଣନିଧି—ଚତୁରତା ଓ ଦୟାଗୁଣରେ ପୂର୍ଣ୍ଣ, ପ୍ରଣୀତ—ଜଣା, ଲାଞ୍ଛନ—ଲକ୍ଷଣ, ଚାମରଚିକୁରା—(ଚାମର ପରି ଚିକୁର ଯାହାର) ଦୀର୍ଘ ଘନକେଶଧାରିଣୀ, ଚହକାଇ—ଡରାଇ; ଚୁମ୍ବି—ପାନ କରି; ରବିନନ୍ଦନାର ନୀର—ଯମୁନାପାଣି; ଚନ୍ଦ୍ରିକାଚୟ—ଚନ୍ଦ୍ରକିରଣ ସମୂହ, ତୁଷାରସାର—ଶୀତଳତ; ଚାରୁ ମାରୁତ—ମନୋହର ପବନ; ଚିନାଏ—ଟିକିଏ; ହରିତ—ଦିଗ; ଚୂଳମୁକୁଟିଆ—ମୟୂର ଚୂଳମୁକୁଟଧାରୀ; ଚରମରା—ପାଟିତୁଣ୍ଡ, ଶୃଙ୍ଗ—ଶିଙ୍ଗା, ବେଣୁ—ବଂଶୀ, ବାରୁଣୀ—ପଶ୍ଚିମଦିଗ; ଦିନଦୂମନ୍ତ—ସୂର୍ଯ୍ୟ; ଚପଳେ—ଅତି ଚଞ୍ଚଳ; ଅମ୍ବର—

ଗୃହ ଦ୍ୱାରରେ ଘେରି ରହିଥାନ୍ତି ବାଳୁଙ୍ଗା ଚୂଳମୁକୁଟିଆ ସଖାମାନେ । ତାଙ୍କର ଶୃଙ୍ଗ ବେଣୁ, ବାଦ୍ୟନାଦ ଶୁଣୁ ଶୁଣୁ, ଶେଷ ହୁଏ ଦିନ ଦିନେ ଦିନେ ରେ, ଚଳାପାଙ୍ଗି, ଡମ୍ଭି ବାରୁଣୀକ ଦିନଦ୍ୟୁତି, ଚପଳେ ଅମ୍ବର ବରଜନ୍ତି; ଚରମ ଭାଗ ମୋ ଭାରି, ଲାଗି ନାହିଁ ଭ୍ରମ ତରି ଚମକ ତ ନାହିଁ ମୋର ଗୃହ ରେ । ୩ ।

ଗ୍ରାମୀକରମ୍ଭର ଶିଖି-ମଣ୍ଡ ସେ କେଉଁ ଅମସା, ଦୃଶି ନାହିଁ ଦିନେ ମୋ ନୟନ । ଚମକ ର କଥା ଦେଖି ପେଟରେ କପଟ ରଖି, ତୋତେ ନିକା ନ କହନ୍ତି କେହି ରେ, ଚଳାପାଙ୍ଗି, ଚରାଚର ଗୃହ ଉପୃମୟ, ଚକଟି ଦେଲୁ ମୋ ହୃଦାଶୟ, ଚରଣ ଯୁଗକୁ ତୋର, ବନ୍ଦେ ଅଷ୍ଟଦୁର୍ଗେଶ୍ୱର, ଗ୍ରେହ ନାହିଁ ଥିଲେହେଁ ବଞ୍ଚାଅ ରେ । ୪ ।

(ଚ) କଚ୍ଚିଣାଂ ବଲ୍ଲବାନାଂ ବ୍ରଜକୃତବପୁଷାଂ କଂ ସ୍ୱଦାରୈରୁଦାରୈଃ
କଚ୍ଚିଦ୍‌ବାଳାବଳୀନାଂ ଶ୍ରିୟମନୁଭବସି ତ୍ୱଞ୍ଚହଂ ସତ୍ୟସନ୍ଧେ ।
ଧ୍ୟାନଶ୍ଚିନ୍ତାମଣୀନାଂ ତମିବ ଜଗନ୍ତ୍ୱାଂ ଗ୍ରାଂ ପ୍ରପଦ୍ୟାସି ତୁଷ୍ଟ-
ଶ୍ଚିହ୍ନଂ ସନ୍ନ୍ୟାତମାନା ବଧମୁଖି ମମ ଯତ୍ ଯାସି ନେହାଦ୍ଭୁତଂ ।

କିମଦ୍ୟ ଲଳତେ ଧରଣୀପ୍ରବରମସଞ୍ଚାରବରବରଗ୍ରହଗ୍ରହିଳ ଭବଗ୍ରହକରନକରବ୍ୟନ୍ତକରତପ୍ରାଙ୍କୁରକେଦାରଂ ତ୍ୱତ୍ ଦୃଷ୍ଟ୍ୟୈବ ଦିଷ୍ଟ୍ୟାଦ ପ୍ରବଷ୍ଟଂ ସ୍ମ ତମାସସ୍ୟା ଭୂୟା ।

---

ଆକାଶ; ବର୍ଜନ୍ତି—ତ୍ୟାଗ କରନ୍ତି; ଚରମ ଭାଗ—ପୃଷ୍ଠଭାଗ; ଗ୍ରାମୀକର—ସୁନା, ଅମସା—ଅପ୍‌ସରା, (ସୁନା ପରି ସୁନ୍ଦର ଶ୍ରୀ-ଯୁକ୍ତା ଅପ୍‌ସରା), ନିକା—କାଣ (ପ୍ରଶ୍ନସୂଚକ ଅବ୍ୟୟ); ଚରାଚର ଗୃହ—ଚତୁର୍ଦ୍ଦିଗର ସ୍ଥିତ, ସଂସାରକ୍ଷେତ୍ର; ହୃଦାଶୟ—ଅନ୍ତଃକରଣ; ଗ୍ରେହ ନାହିଁ—ସ୍ନେହ ନାହିଁ ।

ଅନୁବାଦ—(ଚ) ଅୟି ଲଳତେ ! ବ୍ରଜ ଗୋପାଳମାନେ ନିଜ ନିଜ ଉଦାରସ୍ୱଭାବା ସ୍ତ୍ରୀମାନଙ୍କ ସଙ୍ଗରେ କୁଶଳରେ ଅଛନ୍ତି ତ ? ହେ ସତ୍ୟବାଦିନି, ଗୋପ ଯୁବତୀଗଣ ପରମ ସୁଖରେ ଅଛନ୍ତି ତ ? ହେ ବଧୂମୁଖି, ସ୍ୱପ୍ନ ମାତ୍ରକେ ତୁମ୍ଭେ ଯାହା ମୋ ପାଖରେ ଉପସ୍ଥିତ ହୋଇଗଲ ଏ ବଡ଼ ଅଦ୍ଭୁତ କଥା । ଦରିଦ୍ର ଲୋକ ଏକାବେଳକେ ଅନେକଗୁଡ଼ିଏ ଚିନ୍ତାମଣି ପାଇଲେ ଯେପରି ଆନନ୍ଦିତ ହୁଏ, ତୁମ୍ଭଙ୍କୁ ଏଠାରେ ପାଇ ମୁଁ ସେହିପରି ଆନନ୍ଦିତ ହେଉଅଛି, ଅର୍ଥାତ୍ ତୁମ୍ଭଙ୍କୁ ପାଇବାରୁ ମୁଁ ମନେ କରୁଅଛି, ମୋର ଅଭିଳାଷ ନିଶ୍ଚୟ ପୂର୍ଣ୍ଣ ହେବ ।



ରାଗ—ମୁଖାରୀ

ଛଳବାହିନୀଶ ହେ, ଗୁଡ଼ ଏ ସାହସ ହେ । ପଦ ।
ଛବି ତ ଆବିଳ ଦିଶେ, ଛପିବାରେ ଅଛି କି ସେ । ୧ ।
ଛଟା କାହିଁ କଟାକ୍ଷର, ଛୁଟି ହେଲ୍ କି ବକ୍ଷର । ୨ ।
ଛେଳରୁ ତ ଚିନ୍ତା ବଳ, ଗୁଡ଼ତରେ ଗଳାଣି ଗଳ । ୩ ।
ଛୁଟିଯାଇ ବିଚେତନା, ଛଟପଟ ହେବ ସିନା । ୪ ।
ଛଣା ସୁଧା ଟିକି ଦିଶେ, ଛୁଇଁଦେଲେ ବିଷଟି ସେ । ୫ ।
ଛନ୍ଦ ମନ ତୁମ୍ଭ ଗୁଣେ, ଛ ଦୁଇ ଦୁର୍ଗେଶ ଭଣେ । ୬ ।

(ଛ) ଅଜ୍ଞାନାଭିନୟଂ ବିହାୟ ଋଜୁତାମାଲମ୍ବ୍ୟ ଚିତ୍ତା ମନ-
ଶ୍ଚାଞ୍ଚଲ୍ୟାଦ୍‌ବିରମେତ୍ୟୁପାସ୍ୟ ଭବତୋନ୍ନେଷାଞ୍ଚଲୋଦଞ୍ଚନଂ ।
ନୋଚେଦାଧିବଶାଦସାରଦଦଶାମେତ୍ୟେଦୃଶଂ ସୁନ୍ଦରଂ,
କାନ୍ତାମଞ୍ଜୁପଞ୍ଜମାପ୍ୟକବପୁସ୍ତେ କ୍ଷାମତାମେଷ୍ୟତି ।
ମୋହନ ନଟପଟଲୋଦ୍ଭଟମୁକୁଟମଣେ ନାନ୍ତଃସନ୍ତାପମନ୍ତରେଣ
ଫଳମିତି ପ୍ରଶ୍ନପୂର୍ତେ ତବ କୈତବକୁଶଳତାଲନ୍ତାପ୍ୟଃ ।

---

ଅୟି ଲଳିତେ ! ମଙ୍ଗଳଗ୍ରହ ଏକ ରାଶିରୁ ଅନ୍ୟ ରାଶିକୁ ଗଲାବେଳେ ପ୍ରଖର ସୂର୍ଯ୍ୟରଶ୍ମି ଦ୍ୱାରା ଶସ୍ୟକ୍ଷେତ୍ରମାନଙ୍କରେ ମ୍ରିୟମାଣ ହୋଇ ପଡ଼ିଥିବା ଅଙ୍କୁରସମୂହ ପକ୍ଷରେ ପ୍ରବଳ ବୃଷ୍ଟିଧାରା ଯେପରି, ତୁମ୍ଭଙ୍କୁ ସ୍ମରଣ କରୁଥିବାବେଳେ ତୁମ୍ଭେ ସୌଭାଗ୍ୟକ୍ରମେ ଏଠାରେ ଆସି ଉପସ୍ଥିତ ହୋଇଥିବାରୁ ମୁଁ ସେହିପରି ପୂର୍ଣ୍ଣମନୋରଥ ହେଲି ବୋଲି ମନେ କରୁଅଛି । ଶ୍ରୀକୃଷ୍ଣଙ୍କର ଏହି କଥା ଶୁଣି ଲଳିତା ତାହାଙ୍କୁ ପୁନର୍ବାର କହିଲେ—

—*—

(ଛ) ଛଳବାହିନୀଶ—କପଟରୂପ ନଦୀର ଈଶ ଅର୍ଥାତ୍ ହେ କପଟସାଗର; ଛବି—ରୂପ, ଆବିଳ—ମଳିନ, ଛପିବା—ଲୁଚିବା, ଛଟା—ଭଙ୍ଗୀ, କଟାକ୍ଷ—ଆଡ଼ଚାହାଣୀ, ଛେଳ—ଶେଲ, ବାଣ; ଗଳଗଲାଣି—ମଶିଗଲାଣି, ଛୁଟିଯାଇ—ଦୂରହୋଇ, ବିଚେତନା—ଜ୍ଞାନ ଛଣାସୁଧା—ବିମଳ ଅମୃତ (ସୁଧା ଅର୍ଥରେ), ଛନ୍ଦ—ଆଚ୍ଛନ୍ନ କର; ଛ ଦୁଇ—ଆଠ ।

ଅନୁବାଦ—(ଛ) ହେ କୃଷ୍ଣ, ଅଜ୍ଞତା ଛଳନା ତ୍ୟାଗ କରି ସରଳ ହୁଅ ଏବଂ ମନର ଚଞ୍ଚଳତା ଦୂର କର ଏବଂ ମୋ କଥା ଶ୍ରବଣ କର, ଏହା ତୁମ୍ଭର ନେତ୍ର ସଙ୍କେତଦ୍ୱାରା ପ୍ରକାଶ କର; ନଚେତ୍ ତୁମ୍ଭର ଏହି ଯେଉଁ ସୁନ୍ଦର ଶରୀରକୁ ଦେଖି ଯୁବତୀମାନେ କାମପରବଶ ହୁଅନ୍ତି, ସେହି ଶରୀରଟି ମନସ୍ତାପ ହେତୁରୁ ବଳହୀନ ହୋଇ ଏକାନ୍ତ କ୍ଷୀଣ ହୋଇଯିବ ।

# ଜ

ରାଗ—କେଦାର ବା ପୁନଙ୍ଗ

ଜାଣିଛୁ ମୁଁ ଏତେ ମାତ୍ର ଗୋ ଲଳିତେ ଯାହା ଇଚ୍ଛା ତୋର ତାହା କର,
ଜ୍ୱଳନରୁ ବଳି ସେହି ଦହୁ କେଳି କରେ ବିଶ୍ୱବଶୀନାହାକର । ପଦ ।
ଜଣ କେତେ ବ୍ରଜଶିଶୁ ଥିଲେ ନିଜ, ପୂରୁଁ ଆସୁଥିଲି ଖେଳାଇ ସମଜ,
ଜମ୍ଭାରାତିମଣି ଗିରୀନ୍ଦ୍ରକୁ ଜିଣିବାର ପୂର ହେଲା ମୋ ନଜର । ୧ ।
ଜାତକୁରୁବିନ୍ଦ ବାତାୟନବୃନ୍ଦ, ଅନାଇଁ ମୁଁ ଚାଲୁଥିଲି ମନ୍ଦ ମନ୍ଦ,
ଜଙ୍ଗମ ହେବାର ଜମ୍ବୁନଦସାର ଶିରୀ ସ୍ଫୁରିଲା ସେ କି ପ୍ରକାର । ୨ ।
ଜୀବନଦ ନୀଳଜଳଜଯୁଗଳ, ବିଧୁବିମ୍ବ ହୋଇ ବିଳାସବିଲୋଳ,
ଜାତ କଲା ଗର ଜରଜର ଶର-ନିକର ବରଷା ଖରତର । ୩ ।
ଜହରକୁ ନୋଳି ଦେଲା ପଛ ଗିଳି, ମୋହର ଦେହର ପୀଡ଼ା ଗଲା ବଳି,
ଜୀବନାଶା ଛଳି ଯାଉଅଛି କଳି ପାରୁ ନାହିଁ ମୁଁ ମୋ ହୃଦନ୍ତର । ୪ ।
ଜନମନୋହାରୀ ସେ ବଚନ ଶିରୀ, କାହା ନେତ୍ରପାତେ ଯାଇ ନାହିଁ ପୂରି,
ଜଗଦେବ ହରିଚନ୍ଦନ ମୋହର ନାମ କହୁଅଛି ନିରନ୍ତର । ୫ ।

(ଜ) ତ୍ୱତ୍ସ୍ନେହଜାଭ୍ୟୁଦୟିନା ତ୍ୱୟି ନାପଦେଶଃ,
ସଂସ୍ପୃଶ୍ୟତେ ମମ ହୃଦା କଥୟାମି ତଥ୍ୟଂ ।
ବଦ୍ଧ୍ୱେକମସ୍ତ୍ୟସିତସୌଧଲସଦ୍ବିଳାସମ୍
ତଦ୍ୱୀକ୍ଷଣାଦ୍ଧ ଗଦ ଈଦୃଶ ଉଲ୍ଲଲାସ ।

ସହଚରି ଲଳିତେ, ବିମଳବଳଦଳନେ·ପଲପ୍ରାସାଦଚୂଳଚେଳବଲ୍ଲରୀ-ଖେଳାଲୋଳଲୋଚନେନ ମୟା ପିଷ୍ଟପୋଲ୍ଲଷ୍ଟ—ଚେଷ୍ଟାବିଷିଷ୍ଟା କାଚନ କାଞ୍ଚନମୟୀ ସଞ୍ଚାରିଣୀ ପାଞ୍ଚାଳିକା ତଦଧଃ ସମୀରାୟନୋପକଣ୍ଠେ ଯତ୍ପ୍ରଭୃତ୍ୟ-ବଲୋକି ତତ୍ପ୍ରଭୃତ୍ୟେତାଦୃଗବସ୍ଥେନ ମୟା ସ୍ଥୀୟତ ଇତି କେବଳଂ ଜାନାମି ।

---

ହେ ନର୍ତ୍ତକକୂଳଚୂଡ଼ାମଣି ମୋହନ, ତୁମ୍ଭେ ଯେଉଁ କପଟାଚରଣ କରୁଅଛ, ଅନ୍ତର୍ଦାହ ବିନା ସେହି କପଟତାରୂପ ଲତାରେ ଅନ୍ୟ ଫଳ ଫଳିବ ନାହିଁ । ଏହା ଶୁଣି ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି, "ଜାଣିଛୁ ମୁଁ ଏତେ" ଇତ୍ୟାଦି ।

—○—

(ଜ) ଜ୍ୱଳନ—ଅଗ୍ନି, ବିଶ୍ୱବଶୀନାହାକର—ଚନ୍ଦ୍ରକିରଣ, ସମଜ—ପଶୁସମୂହ, ଜମ୍ଭାରାତିମଣି—ଇନ୍ଦ୍ରମଣି, ଗିରୀନ୍ଦ୍ର—ବଡ଼ପର୍ବତ, ପୂର—ଗୃହ, ନଜର—ଦୃଷ୍ଟି, ଜାତ-କୁରୁବିନ୍ଦ—ଉତ୍କୃଷ୍ଟ ପଦ୍ମରାଗମଣି, ବାତାୟନବୃନ୍ଦ—ଝରକା ସବୁ, ମନ୍ଦ ମନ୍ଦ—ଧୀରେ

# ଝ

## ରାଗ—ମୁଖାରୀ ବା ତୋଡ଼ିପରିଜ

ଝଗଡ଼ ମାନ ହେଲ ହେ ଶ୍ୟାମ, ଝିମୁଠ ହେବାକୁ ସହସ୍ର ଯାମ । ପଦ ।
ଝାଉଁଳିବା ନବ ତମାଳ ରମା, ଝିଙ୍କି ଆଣି ଅଙ୍ଗେ କଲଣି ଜମା । ୧ ।
ଝଡ଼ିବ ବଳ କୋମଳ ଗୁଣ୍ଡରୁ, ଝଷଧ୍ୱଜପୀଡ଼ା ଝାଞ୍ଜି ତାଡରୁ । ୨ ।
ଝୁମି ଝୁମି ଲୁଠି ପୃଷ୍ଠେ ରସାର, ଝୁରିବାର ଏକା ହୋଇବ ସାର । ୩ ।
ଝିଲି ପାଞ୍ଚାଳୀ ଝଟକେ ନାହିଁ କି ? ଝୋଲ ମାଇଲ ତୁମ୍ଭଙ୍କୁ କାହିଁକି । ୪ ।
ଝଲକ ଗଲ କୃଷ୍ଣ ଅକାରଣେ, ଝାଡ଼ଖଣ୍ଡ ରସା ବାଦସା ଭଣେ । ୫ ।

(ଝ) ଖର୍ବଃ ପାର୍ବଣଶର୍ବରୀରମଣଗୁର୍ବୋର୍ବିପୀଡ୍ୟ ବିମ୍ବାଂ ସୁଧା,
ମର୍ତ୍ତ୍ୟଃ କ୍ୱାପି ସୁଧାମମୂନ୍ ବସୁଧ ଲୋକେ ପିବନ୍ତ୍ୟାତୁରଃ;
ବ୍ୟର୍ଥଂ ପ୍ରାର୍ଥନୟା କଦର୍ଥୟସି ମାଂ ଗତ୍ୱା ଦୁରାଶାଂ କଥମ୍,
ସା କିଂ ମଦ୍ବଚନେନ ହନ୍ତ ଭବତୁ ତସ୍ମାଦ୍ରାଧିକା ରାଧିକା ।
କେଶବ ଲୁଣ୍ଠାତନୁବଳୟୁବାଗୁରାଭିଃ କଣ୍ଠୀରବାଙ୍ଗିବ ରାଜୀବଲୋଚନା ସାସ୍ଥାଦ୍ରୁଣୀଭବଂଶୀର୍ଣ୍ଣ ମଶକ୍ୟା ।

---

ଧୀରେ; ଜଙ୍ଗମ ହେବା—ଚଳନ୍ତା, ଚଳୁଥିବା; ଜମ୍ବୁନଦ—ନଦୀ ବିଶେଷ, ଏଥିରୁ ଉତ୍ପନ୍ନ ହୁଏ ବୋଲି ସୁବର୍ଣ୍ଣକୁ ଜମ୍ବୁନଦସାର ବା ଜାମ୍ବୁନଦ ବୋଲିଯାଏ, ଶ୍ରୀ—ଶୋଭା, ସ୍ଫୁରିଲା—ପ୍ରକାଶ ପାଇଲା, ଜୀବନଦ—ବର୍ଷୁକ ମେଘ, ନୀଳଜଳଜଯୁଗଳେ—ଦୁଇଟି ନୀଳପଦ୍ମ; ବିଧୁବିମ୍ବ—ଚନ୍ଦ୍ରବିମ୍ବ, ବିଳାସବିଲୋଳ—କ୍ରୀଡ଼ାରେ ଚଞ୍ଚଳ, (ରାଧାଙ୍କ ମୁଖ ରୂପକ ଚନ୍ଦ୍ରରେ ଚକ୍ଷୁ ରୂପକ ଦୁଇଟି ନୀଳ ପଦ୍ମର କ୍ରୀଡ଼ା), ଶର—ବାଣ, ଜର୍ଜର—ଲିପ୍ତ, ଶରନିକର—ବାଣସମୂହ, ଜୀବନାଶା—ପ୍ରାଣର ଆଶା, ଅମ୍ବର—ବସ୍ତ୍ର, ହୃଦନ୍ତର—ହୃଦୟ ଭିତର, ନେତ୍ରପାତ୍ର—ଚକ୍ଷୁ ରୂପକ ପାତ୍ର ।

ଅନୁବାଦ—(କ) ଅୟି ଲଳିତେ, ତୋ ସ୍ନେହ ଏକା ମୋ ମନର ସମସ୍ତ ଆନନ୍ଦର କାରଣ । ଏପରି ଅବସ୍ଥାରେ ତୋ ପାଖରେ ମୁଁ ଅଦୌ କପଟାଚରଣ ନ କରି ସତ୍ୟ କହୁଅଛି—ଇନ୍ଦ୍ରନୀଳମଣି ପ୍ରାସାଦରେ କ୍ରୀଡ଼ା କରୁଥିବା କୌଣସି ବସ୍ତୁକୁ ଦେଖିବା ଦିନଠାରୁ ମୋର ଏହି ରୋଗ ଜାତ ହୋଇଅଛି ।

ସଖି ଲଳିତେ, ବିଶୁଦ୍ଧ ଇନ୍ଦ୍ରନୀଳମଣି ପ୍ରସ୍ତରରେ ନିର୍ମିତ କୋଠା ଉପରେ ପବନରେ ଖେଳୁଥିବା ପତାକାକୁ ଚାହିଁ ଚାହିଁ ମୁଁ ଯାଉଥିଲି, ଏହି ସମୟରେ ଦେଖିଲି—ଅଲୋକସାମାନ୍ୟସୌନ୍ଦର୍ଯ୍ୟଯୁକ୍ତା ଗୋଟିଏ ସୁବର୍ଣ୍ଣମୟୀ ପୁତୁଳୀ ତାହାର ତଳ ପାଖରେ ଥିବା

ଝରକା ବାଟେ ଗ୍ଭଲି ଯାଉଅଛୁ । ସେହି ଧମସ୍ସରୁ ମୋର ଅବସ୍ଥା ଏପରି ହୋଇଅଛି—ମୁଁ ଏତିକି ମାତ୍ର ଜାଣେ ।

ଏହା ଶୁଣି ଲଳିତା କହୁଅଛନ୍ତି, "ଝଗଡ଼ି ମାତ୍ର ହେଲ ହେ" ଇତ୍ୟାଦି ।

---

(୯) ଝଗଡ଼ି ହେବା—ବୃଥା ଧନ୍ଦା ହେବା, ଝିମୁଝି—ମୁହୂର୍ତ୍ତି, ଯାମ—ପ୍ରହର, ନବତମାଲ—ନୂଆ ତମାଲଗଛ, ରମା—ଶୋଭା, ଝିଙ୍କିଆଣି—ଓଟାରି ଆଣି, ଝଡ଼ିବ—ନଷ୍ଟ ହେବ, ଝଷଧ୍ୱଜ—ମୀନଧ୍ୱଜ, କନ୍ଦର୍ପ; ଝାଞ୍ଜି—ଉତ୍ତାପ, ଝୁମ୍ପି ଝୁମ୍ପି—ଘୁମାଇ ଘୁମାଇ, ଲୁଠି—ଲୋଟି; ରସାର—ମାଟିର, ପୃଥିବୀର; ଝଳ—ଚକ୍ ଚକ୍, ଦୀପ୍ତଶୀଳ, ପାଞ୍ଚାଳୀ—ପିତୁଲା, ଝଟକିବା—ଶୋଭା ପାଇବା, ହୋଇ ମାଇଲା—ଭ୍ରମ ବା ଅଜ୍ଞାନ ଜାତ ହେଲା, ଝଲକ ଗଲ—ଚମକ ପଡ଼ିଲା, ଝାଡ଼ଖଣ୍ଡ—ଅରଣ୍ୟ ଅଞ୍ଚଳ, ରସା—ପୃଥିବୀ, ବାଦସା—ରାଜା ।

ଅନୁବାଦ—(୯) ଏ ସଂସାରରେ ରହି କୌଣସି ବାମନାକୃତି କ୍ଷୁଧାତୁର ଲୋକ ପୂର୍ଣ୍ଣଚନ୍ଦ୍ରରୁ ଅମୃତ ତପୁଡ଼ି ତାହାକୁ ପିଇ କ୍ଷୁଧା ନିବୃତ୍ତି କରେ କି ? ହେ କୃଷ୍ଣ, ତୁମ୍ଭେ ଦୁରାଶରେ ପଡ଼ି ମୋତେ ଅକାରଣରେ ଏତେ ପ୍ରାର୍ଥନା କରୁଅଛ । ମନୁଷ୍ୟ ପକ୍ଷରେ ଆକାଶର ତାରା ପାଇବା ବରଂ ସମ୍ଭବପର, କିନ୍ତୁ ସେହି ରାଧିକାଙ୍କୁ ପାଇବା ସମ୍ଭବପର ନୁହେଁ, ଏପରି ଅବସ୍ଥାରେ ସେ କିଅଣ ମୋର ବଶବର୍ତ୍ତିନୀ ହେବ ?

ହେ କେଶବ, ବୃଢ଼ୀଆଣିଜାଲରେ ସିଂହମାନଙ୍କୁ ଧରିବା ଯେପରି ଅସମ୍ଭବ, ପଦ୍ମନେତ୍ରା ରାଧା ଆମ୍ଭମାନଙ୍କ ଭଳି ଲୋକମାନଙ୍କର ବଶୀଭୂତ ହେବା ସେହିପରି ଅସମ୍ଭବ କଥା ।

ଏହା ଶୁଣି ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି, "ନ ଭଙ୍ଗରେ ଶୁଭଙ୍ଗି" ଇତ୍ୟାଦି ।

---



ରାଗ—ଚୋଖି ଜଙ୍ଗଲ ବା ମୋହନା

ନ ଭାଙ୍ଗ ରେ ଶୁଭାଙ୍ଗି, ଭାରତୀ ହୁଅ ସାହା । ପଦ ।
ନୋହିଲେ ତୁ ପରିତ୍ରାଣ, ନିର୍ଦ୍ଦୟ ନିତନୁ ବାଣ
ନିଃଶେଷ କଲାଣି ଦେହ-ଲହା । ୧ ।
ନୀପକୁଞ୍ଜ ଉପକଣ୍ଠେ, ନ୍ୟସ୍ତ କରିଅ ମୋ କଣ୍ଠେ
ନାଗରୀନ୍ଦ୍ର ନିରୁପମ ବାହା । ୨ ।
ନେତ୍ରାନ୍ତବିଳାସ ତାର ନିଦାନ ଏ ଅବସ୍ଥାର
ନିରେଖି ଉଚାଟୁ ଥରେ ଆହା । ୩ ।
ନିଷ୍ଠୁର ଏ ଯେବେ ଚିତ୍ତେ, ନ ଯାଇବ କଦାଚିତେ
ନ ବତାଇଲେ ତୁ ସୁଖ ରାହା । ୪ ।
ନାଥ ଅଷ୍ଟଦୁର୍ଗଲ ଯେ, ନିତି ସେ ମୋ ପାଦେ ଭଜେ
ନିର୍ବହି ନ କଲେ ତୁ ତାହା । ୫ ।

(ଙ) ଦୃଢ଼ାଂ ନବ୍ୟାଂ ଭବ୍ୟାଂ ତରୁଣି ତରଣିଂ ତେ ମୃଦୁ ଗିରଂ
କରିଷ୍ୟେ କନ୍ଦର୍ପାମ୍ବୁନିଧିତରଣାୟୈତ୍ୟହରହଃ ।
ସ୍ମିତା ଯାଶା ନାସାନିଳଲବବିଳାସାପ୍ୟନୁ ତାଂ,
ତୃଷା ସାଙ୍ଗଂ ଭଙ୍ଗଂ ନ ନୟ ବହିରଙ୍ଗଂ ନ କୁରୁ ମାଂ ॥

ନୋଚିତଂ ସଖି, ସାଧାରଣେତରସୁଖସୌଧୋର୍ଦ୍ଧ୍ୱ ସଞ୍ଚାରଲୀଳୋଦ୍ୟତସାହସିକସ୍ୟ ମମାଶାଧିରୋହଣୀହରଣଂ ।

---

(ଙ) ଶୁଭାଙ୍ଗୀ—ସୁନ୍ଦରୀ, ଭାରତୀ—କଥା, ଅନୁରୋଧ; ସାହା—ସହାୟ, ପରିତ୍ରାଣ—ରକ୍ଷାକାରିଣୀ, ନିତନୁ—ଅତନୁ, କନ୍ଦର୍ପ; ଲହା—ସ୍ୱାଂଶ, ସତ୍ତ୍ୱ; ଉପକଣ୍ଠେ—ସମୀପରେ, ନାଗରୀନ୍ଦ୍ର—ଶ୍ରେଷ୍ଠା ସୁନ୍ଦରୀ; ନିରୁପମ—ଅତୁଳନୀୟ, ବାହା—ବାହୁ, ନେତ୍ରାନ୍ତବିଳାସ—ଆଖିକୋଣର ଭଙ୍ଗୀ, ନିଦାନ—କାରଣ, ନିରେଖି—ଦେଖି, ସୁଖରାହା— ସୁଖର ପଥ ।

ଅନୁବାଦ—(ଙ) ହେ ତରୁଣି, କନ୍ଦର୍ପ ସମୁଦ୍ର ପାର ହେବା ପାଇଁ ତୁମ୍ଭର ମୃଦୁ କଥାକୁ ମୁଁ ନିତ୍ୟେ ମଙ୍ଗଳମୟୀ ନୂତନ ଦୃଢ଼ ନୌକା କରିବି ଅର୍ଥାତ୍ ତୁମ କଥା ଅନୁସାରେ

# ଟ

ରାଗ—ବଙ୍ଗଳାଶ୍ରୀ ବା ବସନ୍ତ

ଟଙ୍କାର କି ଶ୍ରବସରକି ବାସବକୋଦଣ୍ଡରୁ ଚଣ୍ଡ ଧନୁ,
ଟାଣେ ବନ୍ଧେ ଶମ୍ବସଦୃଶ କଳମ୍ବ ଭୁମ୍ଭଙ୍କୁ ଏକା ଅତନୁ ହେ । ୧ ।
ଟେକି ଏ ସୁନ୍ଦର ଶ୍ରୀମୁଖଟି ପରଘରବୁଡ଼ା ଫରମାସ,
ଟିକାଏ ହେଲେ ଯେ ହୃଦୟୁ ସବେଳେ ନୋହିଲା ନାସବଳାସ ହେ ॥
ଟେକାଟେକି ମୋତେ କରି ନାନାମତେ ଭୁମ୍ଭ କାମନା ପୂରିବ,
ଟାଣ ଝୁଣ୍ଟା ଗୁରୁଜନ ଗଞ୍ଜନାରୁ ମୋ ପ୍ରାଣସଖୀ ସରିବ ହେ । ୩ ।
ଟପା ଥିବା ଗୃହ ବଚନୁ ଗୋଚର ଯେତେ ସମାଚ୍ଛର ଗୋପେ,
ଟିପିଦେଲେ କଂସ ଆଗେ କେ ନୃଶଂସ ନନ୍ଦ ବନ୍ଦୀ ହେବେ ଟୋପେ ହେ ॥
ଟାକଛ ସୁଧାଂଶୁକଳାକୁ ଆକାଶୁଁ କରିବାକୁ ପାଣିଗତ,
ଟିକାଯିତ ଅଷ୍ଟଦୁର୍ଗର କହଇ ଶ୍ୟାମ ଏ କ ଆଚରିତ ହେ । ୫ ।

(ଟ) ଯାବନ୍ତୋ ବଳସନ୍ତ୍ର ଯୌବତମନଶ୍ଚୌରାଃ କିଶୋରାଃ ପୁରେ
ପକ୍ଷସ୍ତେଷ ସମୁଦ୍ଭସ୍ପଜନ୍ ରତ୍ତପତ୍ତଃ ପ୍ରକ୍ଷେଡ଼ନାନ୍ କୌସୁମାନ୍
ବାହାବାହବପୂର୍ବକଂ ତ୍ୟଜନ୍ତି କଂ ଭୟେୟବ ରଜ୍ଜ୍ୱାଶୟେ,
ହାହା ଶମ୍ବକଦମ୍ବଡମ୍ବରଭରାଲମ୍ବାନ୍ କଳମ୍ବାନ୍ ମୁହୁଃ ।
କେନ ବାନ କିଶୋରେଣ ବଲ୍ଲବନଗର୍ଯ୍ୟାମଙ୍କଲୁଙ୍କିମବନୀୟନ୍ତ୍ର-
କାର୍ତ୍ତସ୍ୱରକୁଟ୍ଟିମପୁତ୍ତ୍ରିକାଃ କୁଟ୍ଟନା କତି ନାବଲ୍ଲୋକ୍ୟନ୍ତେ ।

---

ରୂଲ ଏ କାମଦୁଃଖରୁ ରକ୍ଷା ପାଇବ । ହେ ସଖି, ପ୍ରାଣ ଧାରଣ ପାଇଁ ଯେଉଁ ଆଶା ଟିକିଏ ଧରିଅଛୁ, କ୍ରୋଧରେ ସେ ଆଶାକୁ ସର୍ବଥା ନଷ୍ଟ କର ନାହିଁ ଏବଂ ମୋତେ ପର ବୋଲି ଭାବ ନାହିଁ ।

ସଖି, ମୁଁ ଅସାଧାରଣ ସ୍ୱର୍ଣ୍ଣସୌଧର ଊର୍ଦ୍ଧ୍ୱରେ କ୍ରୀଡ଼ା କରିବାକୁ ସାହସ କରିଅଛୁ, ତହିଁର ଆଶାରୂପ ନିଶୁଣୀକୁ ହରଣ କରି ନେବା ଉଚିତ ନୁହେଁ । ଏହା ଶୁଣି ଲଳିତା କହୁଅଛନ୍ତି, "ଟଙ୍କାର କି ଶ୍ରବସରକି" ଇତ୍ୟାଦି ।

---

(ଟ) ଟଙ୍କାର—ଓଟାର; ଶ୍ରବ—କାନ, ବାସବକୋଦଣ୍ଡ—ଇନ୍ଦ୍ରଧନୁ, ଚଣ୍ଡ—ଭୟଙ୍କର, ଟାଣେ—ଜୋର୍‌ରେ, ଶମ୍ବ—ବଜ୍ର, କଳମ୍ବ—ଶର, ଅତନୁ—କନ୍ଦର୍ପ, ପରଘରବୁଡ଼ା—ଅନ୍ୟ ଘରକୁ ନଷ୍ଟ କରିବା, ଫରମାସ—ବରାଦ, ଟିକାଏ—ଟିକିଏ,

*

ସାମାନ୍ୟ; ହୃଦୟସରୋଜେ—ହୃଦୟପଦ୍ମରେ, ହାସବିଳାସ—ଉଚ୍ଚହାସ୍ୟରବ, ଠେକାଠେକି କରି—ଖୁସାମତ କରି, ଟାଣଖୁଣ୍ଟା—ପୀଡ଼ାଦାୟକ, ଗଞ୍ଜନା—ଗଞ୍ଜଣା, ଝପା ଥିବା—ଆଚ୍ଛାଦକରୂପେ ଥିବା, ଚର—ଦୂତ, ଚିପିଦେବା—ଗୋପନରେ କହିଦେବା, ଠେ ପେ—କାରାଗୃହରେ, ଚାହିଁଛ—ଅପେକ୍ଷା କରିଛ, ସୁଧାଂଶୁକଳା—ଚାନ୍ଦ୍ରକଳା; ପାଣିଗତ—କରଗତ, ଟିକାୟତ—ଯୁବକ ରାଜା ।

ଅନୁବାଦ—(୪) ଅହୋ ! ଏହି ଗୋପପୁରରେ ଯୁବତୀମଣ୍ଡଳୀର ଯେତେ ରସିକ ଯୁବକ ବିହାର କରନ୍ତି, କନ୍ଦର୍ପ ସେମାନଙ୍କ ପକ୍ଷ ହୋଇ ସେମାନଙ୍କୁ କଅଣ କେବଳ କୁସୁମଶର ମାରି ତୁମ୍ଭଙ୍କୁ ସରଳମତି ଦେଖି ବାହୁଯୁଦ୍ଧ କରି ତୁମ୍ଭ ପ୍ରତି ଖାଲି ବଜ୍ରସଦୃଶ ଶର ପୁନଃ ପୁନଃ ମାରୁଛି ?

କେଉଁ ଚତୁର କିଶୋର ଅବା ଗୋପପୁର କୋଠାମାନଙ୍କ ଉପରେ ରଖାଯାଇଥିବା କେତେ ସୁବର୍ଣ୍ଣନିର୍ମିତ ପିତୁଳା ଦେଖୁ ନାହାନ୍ତି ?

ଏହା ଶୁଣି ଶ୍ରୀକୃଷ୍ଣ କହୁଅଛନ୍ତି—"ଠିକ ୦ ବର୍ତ୍ତୁଳ" ଇତ୍ୟାଦି ।

—*—

(୫) ଠିକ ୦ ବର୍ତ୍ତୁଳ—ସମ୍ପୂର୍ଣ୍ଣ ରୂପେ ୦ ଅକ୍ଷର ପରି ଗୋଲ, ଚନ୍ଦ୍ରାନନା—ଚନ୍ଦ୍ରମୁହୀ, ତୋ ଚିତ୍ତରେ—ତୋ ମନରେ, କଦନ—କଷ୍ଟ, ହାଣବିଦ୍ଧ—ଉଦ୍ଧାର କାର୍ଯ୍ୟ, ଠଣା—ମୁଷ୍ଟିବଦ୍ଧ ଅଙ୍ଗୁଳିମାନଙ୍କଦ୍ୱାରା ଗଣ୍ଡରେ ଆଘାତ, ମୋଚିତ—ଉଦ୍ଧାର, ଠୁଙ୍କି—ମାରି, ଠଉରାଇ—ଖୋଜି, ରାଜବଦନେଷ—ଚନ୍ଦ୍ରନୟନା, ଭୁଟିତ—ପ୍ରୀତିପଦ, ଠୋ କରି—ଏକାବେଳକେ (ଶବ୍ଦ ସହିତ), କିକ—କଅଣ, ନେତ୍ରାଞ୍ଚଳ—ଆଖିକୋଣ, ଅପାଙ୍ଗ; କ୍ଷଣରୁଚି—ବିଦ୍ୟୁତ୍, ପଦାମ୍ବୁଜଧ୍ୟାନରଙ୍କ—ପାଦପଦ୍ମ ଧ୍ୟାନ ପାଇଁ ଆଗ୍ରହୀ ।

ଅନୁବାଦ—(୫) ତୁମ୍ଭେ ମୃଗନୟନା ରାଧାଙ୍କର ପ୍ରିୟସଖୀ; ଏହି ହେତୁରୁ ନିଶ୍ଚୟ ପ୍ରିୟବାଦିନୀ ଓ ବିପତ୍କାଳ ନିମିତ୍ତ ସଞ୍ଚିତ ଧନସ୍ୱରୂପ ହିତକାରିଣୀ, ଆଉ ମନ୍ତ୍ର ଉପାୟ ନିରୂପଣରେ ଚତୁର ଅଟ, ତୁମ୍ଭର ମନୋହର ଆକୃତିରୁ ଏହା ଜଣାଯାଏ, ଏଣୁ ଅବିଶ୍ୱାସ ଭାବ ପରିତ୍ୟାଗ କରି ମୁଁ ନିଜର ଅନ୍ତର୍ବେଦନା ତୁମ୍ଭ ଆଗରେ କହିଲି, ବର୍ତ୍ତମାନ ତୁମ୍ଭଙ୍କୁ ଯାହା ଭଲ ଲାଗେ, ତାହା କର ।

ଯେଉଁମାନେ ପ୍ରକୃତରେ ଦୟାଳୁ ଓ ହୃଦୟବାନ୍ ସେମାନଙ୍କ ସ୍ୱଭାବ ଦୁଃଖୀ ଲୋକମାନଙ୍କ ଉପକାର କରିବାରୁ ଜାତ ହେବା ପବିତ୍ର ଯଶର ଫଳ ସାଧନ ବିଷୟରେ



ରାଗ—ତୋଡ଼ି ବା ଦେଶାକ୍ଷ

ଠିକ ଠ ବର୍ତ୍ତୁଳ ଚନ୍ଦ୍ରାନନା ତୋ ଚିତ୍ତରେ । ପଦ ।

ଠକ ଚିତ୍ତ ନ ଆଚର ମୋ କଦନକୁ ବିଚାର
ଅକପଟ୍ ଯାଣବିଧି ଉଚିତରେ । ୧ ।

ଠଣା ଠିକ୍ କି ଚାପ ଯାସ— ମୁଣ୍ଡେ ମନମଥ ପାଶ—
ବନ୍ଧନ କର ତୁ ପରି ମୋଚିତରେ । ୨ ।

ଠଉରାଇ ଅବସର, କଲେ ତୁ ପ୍ରସଙ୍ଗ ମୋର,
ଯିବ ରାଜୀବନେତ୍ରାଙ୍କୁ ରୁଚିତ ରେ । ୩ ।

ଠୋ କର ଛୁଣ୍ଡାଇ ଦେ ନା ପ୍ରିୟସଖି ! ମୋ ବେଦନା
ନ ଲାଗଇ ନକି ତତେ କିଞ୍ଚିତରେ । ୪ ।

ଠାରଦେଲେ ନେତ୍ରାଞ୍ଚଳେ ବିଜନ ସ୍ଥଳେ ସେ ବଳେ;
ବିରାଜିବ କ୍ଷଣରୁଚି ଉଚିତରେ । ୫ ।

ଠାକୁର ଠାକୁରାଣୀଙ୍କ ପଦାମ୍ବୁଜଧ୍ୟାନରଙ୍କ,
ନୃପ ଜଗଦେବ କରେ ରଚିତ ରେ । ୬ ।

(୦) ଏଣୀଦୃଶଃ ପ୍ରିୟସଖୀ ପ୍ରିୟବାନ୍ଧବୀ ଚେ—
ତ୍ୟାପଦ୍ଧନେନ ସଦୃଶୀତି ବିଶାରଦେନ୍ତି;
ବିଶ୍ୱାସିନଃସ୍ୱହୃଦୟତ୍ୱମପାସ୍ୟ ଭୂଭ୍ୟମ୍, ·
ଯଦ୍ରୋଚତେ କୁରୁ ସୁରୂପବିକ୍ଷାନ୍ତି ବଚ୍ମି ।

ଦୁର୍ଗତଜନବର୍ଗୋପକାରଜନ୍ୟପୁଣ୍ୟଯଶୋଽପବର୍ଗନିର୍ଗତାଳସନିସର୍ଗା ହି ଦୟାଳବୋ ହୃଦୟାଳବଃ ।

ସାଧାରଣତଃ ନିରଳସ ହୋଇଥାଏ, ଅର୍ଥାତ୍ ଉଦାରଚେତା ଲୋକମାନେ ସ୍ୱଭାବତଃ ପରୋପକାରୀ ହୁଅନ୍ତି ।

ଏହା ପରେ ଲଳିତା କହିଲେ—"ଡର ନାହିଁ କି ହେ" ଇତ୍ୟାଦି ।



## ରାଗ—ତୋଡ଼ି ପରଜ

ଡର ନାହିଁ କି ହେ, ପରତରୁଣୀ ହରଣୁ
ଡୋର ଲାଗି ଘେର ପଡ଼ିବ ଯେ ହେବ ଗୋରି ପର ଆଚରଣୁ । ପଦ ।
ଡୋଳା ପ୍ରତିମାକୁ ପରାୟେ ତୁମ୍ଭଙ୍କୁ ଯଶୋଦା ଅଛନ୍ତି ପାଳି,
ଡୁବିବଟି ଧନ କେଳିକି ମୋହନ ଲୋଡ଼ୁଛ ଯେ କୁଳପାଳି । ୧ ।
ଡକା ଦେବା ଦିନେ ଅରିଷ୍ଟେ ଉଗ୍ରିନେ ଦେଖିଛୁଁ ଶକଟ-ଦଶା ।
ଡାକମଧମାକୁ ଡାକି ଆଣିବାକୁ ଏଠାକୁ କାହା ଭରସା । ୨ ।
ଡବ ଡବ ବାରି ନିଃସରିବ ଗୋରି ପଦ୍ମରେ ନୟନଯୁଗୁ,
ଡହ ଡହ ହେବ ମୃଦୁ ଅବୟବ ଶ୍ୟାମ ଶ୍ରୀଅଙ୍ଗଟି ବେଗୁ । ୩ ।
ଡାକି ତ ଜାଣ ମୋହନ ବଂଶୀରବେ ବିହର ସୁଖେ ଏ ବନେ,
ଡୁଇଁ ହେବୁଁ ସିନା ଆମ୍ଭେ ଫଳ ବିନା ନପଡ଼ୁ ତା ଆମ୍ଭ କାନେ । ୪ ।
ଡାଳିମ୍ବମଞ୍ଜି ମଞ୍ଜୁଳଦଶନା ସେ ଖେଳୁଥାଉ ତୁମ୍ଭ ତୁଲେ,
ଡେଉଁଥାଅ ବନଯାକ ତୁମ୍ଭ ମନ ଶ୍ରୀହରିଚନ୍ଦନ ବୋଲେ । ୫ ।

(ଡ) କଂସଃ ପୁଂସାଂ ନୃଶଂସାନାଂ ବତଂସଃ ଶାସ୍ତି କାଶ୍ୟପୀମ୍ ।
ଦୁଷ୍ଟପଥେ ଧନନଃ ସୂନୋ କଥଂ ଯାସ୍ୟଧ୍ୱମାନତାମ୍ ।

ଅବଣ୍ଣାର୍ଣ୍ଣବୋଦ୍‌ଗୀର୍ଣ୍ଣ କଲ୍ଲୋଳମାଳାନ୍ଦୋଳିତସ୍ୟ ମପି କଂ ପୁନସ୍ତରୁଣି ତରଣିଭିମୁଖୀକରଣୀୟମିତ୍ୟୁପଦିଶ୍ୟ ମାମପି କୁଳକୂଳଦବିଷ୍ଟାଂ ବଧାୟୁ ମଜ୍ଜୟିତୁଂ ବିଗ୍ରହମାରଭସେ ।

---

(ଡ) ଡୋର—ବାନ୍ଧିବା ଦଉଡ଼ି, ଘେର ପଡ଼ିବ—ବନ୍ଧା ହେବ, ଡୋଳା ପ୍ରତିମା—ଚକ୍ଷୁର ପୁତ୍ତଳିକା, କନୀନିକା; ଡୁବିବଟି ଧନ—ସମସ୍ତ ନଷ୍ଟ ହେବ, କୁଳପାଳି—ସାଧ୍ୱୀ ସ୍ତ୍ରୀ, ଅରିଷ୍ଟେ—ସୂତିକାଗୃହରେ, ଶକଟ—କଂସପ୍ରେରିତ ଅସୁରବିଶେଷ; ଉଗ୍ରିନେ—ଚଳି ହେଇ, ଡାକମଧମା—ଡମରୁମଧ୍ୟା ଅର୍ଥାତ୍ କ୍ଷୀଣକଟି, ଡବ ଡବ—ଅବିରଳ ଧାରରେ, ମୃଦୁଅବୟବ—କୋମଳ ଶରୀର, ବାରି—ଅଶ୍ରୁ, ନିଃସରିବ—ବୋହିଯିବ, ଡହ ଡହ—ପ୍ରଜ୍ୱଳିତ, ବେଗୁ—ବେଗ କାମନାରୁ, ଡୁଇଁ ହେବୁଁ—କାନ୍ଦିପାଇବୁ, ବ୍ୟାକୁଳ ହେବୁଁ; ଡାଳିମ୍ବମଞ୍ଜି ମଞ୍ଜୁଳଦଶନା—ଡାଳିମ୍ବ ମଞ୍ଜି ପରି ସୁନ୍ଦର ଦନ୍ତ ଯାହାର ।



ରାଗ—ଦେଶାକ୍ଷ

ଢାଳେ ତ ଢାଳିଲୁ ନାହିଁ କୃପାସୁଧା ଝରିକ ରେ । ପଦ ।
ଢକ୍‌କା ବାଜୁଥାଇ ବ୍ରଜେ, ଲଜ୍ଜାର ହୃଦମ୍ବୁଜେ,
କରୁଣା ଅଛୁ ବୋଲି ଯା ନେଲୁ କେ ତା ହରିକ ରେ । ୧ ।
ଢୋଳାଇଲୁ ପତ୍ର ଢଳ, ଢଳେ ପଡ଼ିଯିବା ଭଳି,
ହେଲନ ଯେ କୁନ୍ଦକଳିଦଶନା ଏ ସରିକ ରେ । ୨ ।
ଢ଼କାଇ ଦେଲେ ତୃଷିତ, ଚକୋର ଚଞ୍ଚୁରେ ଶୀତ-
ଭାନୁଚନ୍ଦ୍ରିକାକୁ ବରୁ ଯାଏ କଛୁ ସରିକ ରେ । ୩ ।
ଢୋକୁଟିକୁ ପିନା ହଟି, ମୋ ସାର ଯାଉଛୁ ତୁଟି,
ପିଇ ଦିଅନ୍ତୁ କ ଗୋଟିଯାକ ସେ କଣୋସ୍ତିକ ରେ । ୪ ।
ଢବା-ଢନାବରୁ ଗୋପ-ନଗରୀର ବନ୍ଦେ ଭୂପ
ବାଲୁକେଶ ଦେବ ନୀପ କୁଞ୍ଜପୁଞ୍ଜସରିକ ରେ । ୫ ।

---

ଅନୁବାଦ—(ଢ) ହେ କୃଷ୍ଣ, କଂସ ନୃଶଂସମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସେ ବର୍ତ୍ତମାନ ପୃଥିବୀ ଶାସନ କରୁଅଛୁ । ଏପରି ଅବସ୍ଥାରେ ତୁମ୍ଭେ ଜଣେ ଧନୀ ଲୋକର ପୁଅ ହୋଇ କାହିଁକି ଅପଥରେ ପଥିକ ହେଉଅଛ ?

ତୁମ୍ଭେ ବର୍ତ୍ତମାନ ଅପବାଦସମୁଦ୍ରରୁ ଉଠୁଥିବା ଲହରୀରେ ଆନ୍ଦୋଳିତ ହେଉଅଛ, ସେହି ସମୁଦ୍ର ପାରି ହେବାପାଇଁ "ହେ ଯୁବତି ! ତୁମ୍ଭେ ମୋର ନୌକା ହୁଅ" ବୋଲି ଉପଦେଶ ଦେଇ ମୋତେ ପୁଣି କାହିଁକି କୂଳରୁ ଦୂରକୁ ଠେଲି ଦେଇ ସେହି ଅପବାଦସମୁଦ୍ରରେ ବୁଡ଼ାଇବାକୁ ବିଚାର କରୁଅଛ ?

ଏହା ଶୁଣି ଶ୍ରୀକୃଷ୍ଣ କହୁଅଛନ୍ତି, "ଢାଳେ ତ ଢାଳିଲୁ ନାହିଁ" ଇତ୍ୟାଦି ।

---

(ଢ) ଢାଳେ—ଥରେ, ଝରି—ସୁରେଇ ଆକୃତିର ଜଳପାତ୍ରବିଶେଷ, ଢକ୍‌କା—ବାଦ୍ୟବିଶେଷ, ବଡ଼ ଢୋଲ; ହୃଦମ୍ବୁଜେ—ହୃଦୟରୂପ ପଦ୍ମରେ, ହରିକ—ହରଣ କରି, ଢୋଳାଇଲୁ—ଘୂରାଇଲୁ, କୁନ୍ଦକଳିଦଶନା—କୁନ୍ଦଫୁଲର କଢ଼ି ପରି ଦାନ୍ତ ଯାହାର, ଢ଼କାଇଦେଲେ—ପିଆଇଦେଲେ, ଚଞ୍ଚୁ—ଥଣ୍ଟ, ଶୀତଭାନୁ—ଚନ୍ଦ୍ର, ବରୁ—ଧନ, ଢୋକୁଟିକୁ—ଥରେମାତ୍ର ପିଇବାକୁ, ସାର—ବଳ, ଢବା—କୋଠାଘର, ଢନାବ—ଝରକା, ନୀପକୁଞ୍ଜ ସରିକ—କଦମ୍ବ କୁଞ୍ଜ ପର୍ଯ୍ୟନ୍ତ ।

(ଢ) ଶୃଣ୍ୱଂ ଶୃଣ୍ୱଂ ମଯ୍ୟୋକ୍ତୈଃ କଥିତମକପଟଂ ଶୃଣ୍ୱନ୍ମାକର୍ଣ୍ଣ୍ୟ ଭୂୟଃ,
ପାଯ୍ୟଂ ପାଯ୍ୟଂ ଚ ଦୃଷ୍ଟ୍ୟା ମମତନୁମତନୁ ସ୍ଫୁରନାରାଚଭିନ୍ନାଂ;
ସାନୁକ୍ରୋଶେନ ସାନୁଗ୍ରହମହହ ମମ ପ୍ରାଣରକ୍ଷାଣନୌକ୍ଷା—
ମିଚ୍ଛାଂ ତୁଚ୍ଛାଂ ବିଧାଯ୍ୟ କ୍ଷିପସି ସୁମୁଖି କିଂ ରୋଷରୁକ୍ଷଂ କଟାକ୍ଷମ୍ ।

ମୀନାଙ୍କ କଙ୍କପରଦୂନାତ୍ମନଃ କଥମାର୍ତ୍ତିସ୍ୟ ରକ୍ଷଣେ କାର୍ତ୍ତସ୍ୱର-ଗୌରାଙ୍ଗୀଭିରକାରୁଣିକହୃଦୟବୃତ୍ତିଭିରମୁଖୀଭିଃ ଇତି ବ୍ରୁବତି କଶୋର-ଶିରୋମଣୌ ସସ୍ମିତଭରଂ ଲଳିତା ।

---

ଅନୁବାଦ—(ଢ) ସଖି, ମୁଁ ଯାହା କହୁଥିବାରୁ ମନ ଖୋଲି ସ୍ପଷ୍ଟରୂପେ ଯାହା ପ୍ରକାଶ କଲି, ସେ ସବୁ କଥାକୁ ଶ୍ରବଣ କରି, ପୁଣି ମୋ ଶୃଣ୍ୱନ୍ ଉକ୍ତିକୁ ବାରମ୍ବାର ଶୁଣି କନ୍ଦର୍ପର ନିର୍ଦ୍ଦୟ ବାଣଦ୍ୱାରା ବିଦୀର୍ଣ୍ଣ ହୋଇଯାଇଥିବା ମୋର ଏହି ଶରୀରକୁ ଅନୁଗ୍ରହ କରି ନିଜ ଚକ୍ଷୁରେ ଦେଖି ମଧ୍ୟ ତୁ ପୁଣି ମୋ ଜୀବନ ରକ୍ଷିବାରେ ଜାତ ହେଉଥିବା ଉତ୍କଣ୍ଠାକୁ ବୃଥା କରି ଅର୍ଥାତ୍ ମୋ ଜୀବନ ରକ୍ଷାରେ ମୋଟେ ଇଚ୍ଛା ନ କରି କାହିଁକି କୋପକର୍କଶ ଦୃଷ୍ଟିକୁ ମୋ ଉପରେ ପକାଉଅଛୁ ?

ଯେଉଁ ଲୋକ କନ୍ଦର୍ପବାଣରେ ଏକାନ୍ତ ସନ୍ତପ୍ତ ହୋଇଅଛି, ସେହି ଆର୍ତ୍ତିମାନଙ୍କୁ ରକ୍ଷା କରିବାରେ ତୁମ୍ଭ ପରି ତପ୍ତକାଞ୍ଚନବର୍ଣ୍ଣାଭା ସୁନ୍ଦରୀମାନଙ୍କ ହୃଦୟ ଏଡ଼େ ନିର୍ଦ୍ଦୟ କାହିଁକି ? କଶୋରତିଳକ ଶ୍ରୀକୃଷ୍ଣ ଏହା କହି ନିବୃତ୍ତ ହୁଅନ୍ତେ ଲଳିତା ହସି ହସି ଚଞ୍ଚଳ ତାଙ୍କୁ କହୁଅଛନ୍ତି,—"ଅତସୀକୁସୁମ ସମ" ଇତ୍ୟାଦି ।

—*—

(ଣ) ଅତସୀକୁସୁମ—ପେଶୀଫୁଲ, ଅଳି—ସଜନବନ୍ଧ ଅନୁରୋଧ, ନିବଡ଼—ଦୃଢ଼, ସେ—ରାଧାଙ୍କ ଅର୍ଥରେ, ଅଧ ଅଧରରେ—ତଳ ଓଠରେ, ତ୍ରିହବ—ତର୍କିବ, ଅନୁମାନ କରିବ; କଲ୍ପବଲ୍ଲୀ—କଳ୍ପଲତା, ଅକ୍ଷଣ୍ଡସୁଧାମୟୂଖ—ପୂର୍ଣ୍ଣଚନ୍ଦ୍ର, ଅଙ୍କୁର—ମହୁର୍ତ୍ତ; ସରି—ଭଲ ହେଲି (ଗଞ୍ଜାମ ଅଞ୍ଚଳର ପ୍ରୟୋଗ), ବଲ୍ଲବପଲ୍ଲୀ—ଗୋପାଳଗାଆଁ, ଗୋପପୁର; ଉଗ୍ରନିର୍ଦ୍ଦେଶ—ନିଷ୍ଠୁରାଦେଶ, ନୃପ—କଂସ ଅର୍ଥରେ, ଗିରିଦରୀ—ପର୍ବତ ଖୋଲ ବା ଗହ୍ୱର, ଅଖିଳ ଜନନୀ—ସମଗ୍ର ମାତୃ-ସମାଜ, ମୃଗମଦକଲି—କସ୍ତୁରୀଚିତା (ଶ୍ରେଷ୍ଠତ୍ୱାନ୍ୱୟା—ରାଧାଙ୍କ ଅର୍ଥରେ) ।

ଅନୁବାଦ—(ଣ) ହେ କୃଷ୍ଣ, ପଦ୍ମନେତ୍ରା ରାଧାଙ୍କର ବିପରୀତଭାବାପନ୍ନ ମନକୁ ନାନା ଚେଷ୍ଟାରେ ତୁମ୍ଭ ପ୍ରତି ଅନୁରକ୍ତ କରିବାକୁ ମୁଁ ଯାଉଅଛି । ଯେବେ ତାଙ୍କ ମନ ଅର୍ଦ୍ଧମାତ୍ରାରେ ପ୍ରସନ୍ନ ହୁଏ, ତେବେ ମୁଁ କୃତାର୍ଥ ହେଲି ବୋଲି ମନେ କରିବି; ଅନ୍ୟଥା ତୁମ୍ଭ ଚନ୍ଦ୍ରମୁଖ ଦର୍ଶନ ଏହିଠାରେ ମୋର ଶେଷ ହେଲା ।

# ୫

ରାଗ—ସୋମ

ଅତସୀ କୁସୁମସମ ଶ୍ୟାମ ହେ ମୁଁ ଗଲଟି । ପଦ ।

ଅଳ ତୁମ୍ଭର ନବଢ଼, ଅସହ୍ୟ ସେ ଯେ ବଢ଼
ଅବଶ୍ୟ ତା ସ୍ମୃତିରେ ମୁଁ ନବେଦନ କଲଟି । ୧ ।

ଅଧ ଅଧରରେ ସ୍ମିତ ଉଲ୍ଲାସି ହେଲେ ଲଜ୍ଜିତ
ଉହ୍ୟବ ଏହ୍ୟଟି ବୋଲ କୃପାକଲ୍ପବଲ୍ଲୀଟି । ୨ ।

ଆରକତ କଲେ ମୁଖ, ଅଖଣ୍ଡ ସୁଧାମୟୂଖ,
ଆବୁର ସବର ମୋର ଖାଇଲେ ହେଁ ମଲଟି । ୩ ।

ଅଦୃଷ୍ଟବନ୍ତୁ କତଶୋଖ, ଅଙ୍ଗୀକାର କଲେ ଯଶ
ଅଭାବେ ଉଛନ୍ନ ହେବ ଏ ବଲ୍ଲବ-ପଲ୍ଲୀଟି । ୪ ।

ଉଗ୍ରନନ୍ଦେଶ ନୃପର ଉପବନ ଗୋପପୁର
ଆଶ୍ରୟ ନୋହ୍ୟବ ଗୋବର୍ଦ୍ଧନଗିରିଦରୀଟି । ୫ ।

ଅଷ୍ଟଦୁର୍ଗନାଥ ଭଷେ, ଆହା ଧାନେ କ ଶୋଭି ସେ
ଅଖିଳ ଜନମୀ ନାସାମୃଗମଦକଲଟି । ୬ ।

(୫) ଯାମି ପ୍ରଣ୍ଟପମନୁକୂଳୟିତୁଂ ପ୍ରଯତ୍ନୈ—
କ୍ଷେତ୍ରନ୍ତଃ ସର୍ବୈରୁହସହୋଦରଲୋଚନାୟାଃ,
ସାମିପ୍ରସନ୍ନମପି ଚେଦଭବଂ କୃତାର୍ଥୀ,
ନୋ ଚେଦ୍ଭଦାସ୍ୟବଧୂବୀକ୍ଷଣମେତଦେବ ।

ନନ୍ଦନନ୍ଦନ କଦାଚିଲ୍ଲାଢବଲବସ୍ୟାପ୍ୟଷ୍ଟିତୌ ତମନୁଭୂୟ ଭୂୟସ୍ତନ୍ମୁଖଂ ସୁନ୍ଦରେନ୍ଦୁସନ୍ଦର୍ଶନକନ୍ଦଳିତାନନ୍ଦସନ୍ଦୋହାନୁଭବମନ୍ଦାଦରୟା ବାମୟା ଭବ୍ୟ-ମିତ ନବେଦ୍ୟ ନଷ୍କ୍ରମ୍ୟ ସବାଧଂ ଶ୍ରୀରାଧାୟାଃ ପ୍ରବଶ୍ୟ ତାଂ ପ୍ରତି ।

---

ହେ ନନ୍ଦନନ୍ଦନ, ଉଦ୍ଦେଶ୍ୟ ସିଦ୍ଧିରେ ମାତତା ମଧ ଅଙ୍ଗୀକାର କରବ । କନ୍ତୁ ତୁମ୍ଭ ମୁଖଚନ୍ଦ୍ର ଦର୍ଶନରେ ଯେଉଁ ଆନନ୍ଦ ଅନୁଭବ କରୁଥିଲି, ତହିଁରେ ଆଉ ମୋର ଉତ୍ସାହ ରହବ ନାହିଁ, ମୁଁ ସେ ବଷୟରେ ବମୁଖ ହୋଇ ରହବ ସିନା । ଲଳତା ଶ୍ରୀକୃଷ୍ଣଙ୍କୁ ଏହପର କହବା ପରେ ରାଧାଙ୍କ ନକଟରେ ଉପସ୍ଥିତ ହୋଇ ତାଙ୍କୁ କହଲେ "ତୋ ଯେନ ତମାଲ ଶ୍ୟାମ". ଇତ୍ୟାଦ ।

—*—



ରାଗ—କାନଡ଼ାଗୌଡ଼ା ବା କନଡ଼ା

(ସଖି ରେ) ତୋ ଘେନି ତମାଳଶ୍ୟାମ ମୋ ମରଜ କଷିଲ ରେ,
ତଥାପି ତ ଛଳେ ହେଲେ ତୋ ସ୍ନେହେ ନ ରସିଲ ରେ । ପଦ ।
ତଳେ ବସନ ପ୍ରସାରି, ତୃଣ ଦଶନାନ୍ତେ ଧରି,
କହିଲେ ହେଁ ଅନୁସରି, ରାଜି ତ ନ ହେଲ ରେ । ୧ ।
ତହୁଁ କି ବିଷମଭାବ, ତର୍କିଲି ମୋ ଗୃହ ଶ୍ରବ—
ତଟକୁ ଘଟନ୍ତେ ଅବଧାନ ବିନା ହସିଲ ରେ । ୨ ।
ତପନଜାତଟକୁ ତୁ, ତରୁଣୀଠା କେଉଁ କୁତୂ—
ହଳରୁ ଆସିଲୁ ହେତୁ, କହ ବୋଲି ଘୋଷିଲି ରେ । ୩ ।
ତାର ତୋର ସୁଲୋଚନା, ତାରତମ୍ୟ ବିବେଚନା—
ଲବ ହୋଇ ନାହିଁ ତହିଁ, ତୋ ଚିତ୍ତ କେ ପେଶିଲ ରେ । ୪ ।
ତିରସ୍କାର ପୂର୍ବଭାଷା, ତରଳାଇ ସୁଖ ଆଶା,
ତୋଟିକି ଚୂମ୍ବିଲି ତୃଷା ତମିର ବିଳସିଲ ରେ । ୫ ।
ତୁଚ୍ଛସ୍ନେହମନ ଜନ, ତୋ ସଙ୍ଗକୁ କି ଭଜନ,
ପ୍ରସନ୍ନ ହରିଚନ୍ଦନ ଜଗଦ୍ଦେବ ଭଷିଲ ରେ । ୬ ।

(ତ) ଦୃଷ୍ଟ୍ୱା ଭିଦ୍ଭୁଜଦମ୍ଭହେମଲତୟୋର୍ଗ୍ରଶ୍ନିର୍ଦ୍ଧ୍ୱନିତ୍ୟଂ ସ୍ଥିତାମ୍,
ପାଯ୍ୟାନ୍ତାମଧୁନାପି ତନ୍ମ୍ ଭବତ୍ତ ଭଲ୍ଲାଧିକାଲ୍ଲାଘବାତ୍;
ଆଯ୍ୟାସଃ ସଖି କେବଳଂ ଫଳମଭୂତ୍ ବାଧାପ୍ୟସାଧାରଣୀ,
ଚେତସ୍ୟା ବିରଭୂଦ୍‌ବଭୂବ ନ ପୁନସ୍ତ୍ଵଲ୍ଲାଳସୋଲ୍ଲାସନମ୍ ।
ହଷ୍ଟ୍ୟା କଦାଚଦ୍‌ଭବଦାଯ୍ୟାଭିଷ୍ଟସିଦ୍ଧୌ ସମ୍ଭାବ୍ୟାମପି ବନ୍ଧାଭିମୁଖ-
ପତ୍‌ସ୍ୟତେ କଲ୍ୟାଣବଲ୍ଲ୍ୟାଃ ।

---

(ତ) ତମାଳଶ୍ୟାମ—ତମାଳ ଗଛର ପତ୍ରପରି ବର୍ଣ୍ଣ ଯାହାର, କୃଷ୍ଣ; ମରଜ—ଇଚ୍ଛା, ହୃଦ୍‌ଭାବ; କଷିଲ—ପରୀକ୍ଷା କରି ନେଲ, ବସନ—ବସ୍ତ୍ର, ତୃଣ—କୁଟା, ଦଶନାନ୍ତେ—ଦାନ୍ତରେ, ରାଜି ହେଲି ନାହିଁ—ସମ୍ମତ ହେବା ଭଳି ଜଣାଗଲ ନାହିଁ, ଶ୍ରବତଟକୁ—କାନ ପାଖରେ, ଅବଧାନ ବିନା—ମନଯୋଗ ବିନା; ତପନଜାତଟ—ଯମୁନାକୂଳ, କୁତୂହଳରୁ—କୌତୁକ ହେତୁରୁ, ତାରତମ୍ୟ ବିବେଚନା—ନ୍ୟୂନତା ଓ ଆଧିକ୍ୟ ଜ୍ଞାନ, ଲବ—ଅଳେମାତ୍ର; ତିରସ୍କାର ପୂର୍ବଭାଷା—ଗାଳିଦେଇ କହିବା, ତରଳାଇ—ନାଶକରି ବା ଦୂରକରି, ତୋଟି—କଣ୍ଠ, ତମିର—ଅନ୍ଧାର. ତୁଚ୍ଛସ୍ନେହମନ ଜନ—ଯାହା ମନରେ ଆଦୌ ସ୍ନେହ ନାହିଁ, ସ୍ନେହଶୂନ୍ୟ ଲୋକ; ପ୍ରସନ୍ନ—ଆଶ୍ରିତ ।

# ଥ

ରାଗ—ଝୁଂଝୋଟା ବା ଚୋଡ଼ୀ ଜଙ୍ଗଲା

ଥାପିରେ କହ ତଥାପିରେ ପ୍ରିୟସଖି ଥିବ କି ଗୁଡ଼ିବ ପ୍ରାଣ । ପଦ ।
ଥିଲା ପର ସ୍ନେହ, ଲାଗିଲା କି କହ, ଅଛୁଟି ତୋତେ ମୋ ରାଣ । ୧ ।
ଥକାଇ ତୁ କହୁ, କହୁ ଧୃତ ରହୁ, ନାହିଁଟି ମୋହର ଜାଣ । ୨ ।
ଥୋକାଏ ତୋ ପ୍ରୀତି-ବର୍ଦ୍ଧକ ସମ୍ମତ କଲେ କି ମୋ ପରିତ୍ରାଣ । ୩ । *
ଥରେ ହେଲେ ବକ ହେବ ମୋତେ ନକ ବଞ୍ଚାଇବ ପଞ୍ଚବାଣ । ୪ ।
ଥୋଇ ହୃଦେ ଛଳ, ନ କର ବିକଳ, କହେ ଅଭିମନ୍ୟୁଦାସ ରାଣ । ୫ ।

(ଥ) ସ୍ମିତସୁଭଗମୁଖଃ ଶିଖଣ୍ଡମୌଳିବଦ କମୁରୀକୃତବାନ୍ ମଦଙ୍ଗସଙ୍ଗମ୍;
କଥୟ ସଖି ଯଦା ତୃଣାୟ ମେନେ ବପୁରଥ କିଂ ବିସୃଜାମି ଧାରୟାମି ॥

ସହଚରି ଲଳିତେ ! ଦମ୍ପସନ୍ତ୍ୱିତସମୁଜ୍ଜ୍ୱଳମନ୍ତରେଣ ବିଲମ୍ବମନବଲମ୍ବ୍ୟ ବ୍ରୂହି ସତ୍ୱରମ୍ଂ ଜୀବାମି ବା, କିନ୍ତଦନାନ୍ୟଥବା ତାପିଞ୍ଛଶାଖିଶାଖାୟାମୁଦ୍ବନ୍ଧନମଙ୍ଗୀକରିଷ୍ୟାମି ।

---

ଅନୁବାଦ—(ତ) ହେ ସୁନ୍ଦରି, ମୁଁ ତୁମ୍ଭର ନିତ୍ୟ ଅନୁଗତ, ଗୌରବହୀନ ହେବାରୁ ମୋତେ ପ୍ରାଣାନ୍ତକ କଷ୍ଟ ହେଉଅଛି, ତହିଁରୁ ତୁମ୍ଭେ ମୋତେ ରକ୍ଷା କର; ମୋର ପରିଶ୍ରମ ମାତ୍ର ସାର ହେଲା ଏବଂ ହୃଦୟରେ ଅସାଧାରଣ କଷ୍ଟ ଜାତ ହେଲା; କିନ୍ତୁ ତୁମ୍ଭ ଆଶା ପୂରଣ ହେଲା ନାହିଁ ।

ଭାଗ୍ୟବଶରୁ ଯେବେ କେତେବେଳେ ତୁମ୍ଭ ଅଭିଳାଷ ପୂର୍ଣ୍ଣ ହୁଏ, ତେବେ ଶେଷଫଳ ଭଲ ହେବ ନାହିଁ ।

ତତ୍ପରେ ରାଧା କହିଲେ—ଥାପିରେ କହ ତଥାପିରେ···

---

(ଥ) ଥାପି—ସ୍ଥିର କରି, ଲାଗିଲା—ଜଣାଗଲା, ଥକାଇ—ରହି ରହି, ଧୃତ—ଧୈର୍ଯ୍ୟ, ଥୋକାଏ—ଟିକିଏ, ପ୍ରୀତିବର୍ଦ୍ଧକ—ପ୍ରଣୟ ପ୍ରସ୍ତାବକୁ; ପରିତ୍ରାଣ—ରକ୍ଷାକାରୀ, ନକ—ସତେ କି ?, ପଞ୍ଚବାଣ—କନ୍ଦର୍ପ, ଛଳ—କପଟତା ।

ଅନୁବାଦ—(ଥ) ଅୟି ସଖି ଲଳିତେ, ସତ କହ, ମୟୂରଚୂଳିଆ ସ୍ମିତସୁନ୍ଦରବଦନ ଶ୍ରୀକୃଷ୍ଣ ତୋ ପ୍ରସ୍ତାବକୁ ଅଙ୍ଗୀକାର କଲେଟି ? କିମ୍ବା ମୋ ଅଙ୍ଗସଙ୍ଗକୁ ଅତି ସାମାନ୍ୟ ବୋଲି ମନେ କଲେ, ଏ ଦେହକୁ ରଖିବି କି ଗୁଡ଼ିବି କହ ।

---

* ପାଠାନ୍ତର—ଥୋକାଏ ମୋ ପ୍ରୀତିବର୍ଦ୍ଧକ ସମ୍ମତି ନ କଲେ କି ପରିତ୍ରାଣ ।

*



ରାଗ—ଭଟିଆରି

ରେ ଦୁଃଖିଧନ, ଦମ୍ଭ ଦେଖିବାକୁ ସିନା କଲି ଛନ,
ଦୁଃଖମୟ ନ କର ସରସ ମନ । ପଦ ।

ଦୂରୁ ମୁଁ ଯିବାର ଜାଣି ହରି, ଦରିଦ୍ର ନିଧି ଲଭିଲା ପରି,
ଦ୍ୱିଗୁଣ ଆଦରେ ପ୍ରମୋଦନଦରେ ମଜ୍ଜି ଘେନିଗଲେ କର ଧରି । ୧ ।
ଦୟାକରଜର କରି ଚିତ୍ତ, ଦନ୍ତବାସେ ରଖି ଦରସ୍ମିତ,
ଦଶବାର ଅନାମୟ ମୋତେ ଘେନାଘେନ କରି ପଚାରିଲେ ମିତ । ୨ ।
ଦେଖିଲି ଯାହା ଶ୍ରୀଅଙ୍ଗଦ୍ୟୁତି, ଦଳି ହୋଇଗଲା ମୋର ଗ୍ଳୁତି,
ଦ୍ୱିତୀୟାର ଶଶି-ଲେଖା ପରି ଦିଶିଗଲେନି ସେ ଇନ୍ଦ୍ରନୀଳହାଟି । ୩ ।
ଦୁର୍ବାର ତୋ ନେତ୍ରାଞ୍ଚଳଶର ଦେବାରୁ ଦୁଃଖ ଦୁଃସହତର
ହବାଲି ହେବାର ଦେହମଞ୍ଜୁଷାର ଜାଣି ଯା ହେଲା ମାନସ ମୋର । ୪ ।
ଦୁର୍ବଳ ସାଳସ ଦେଖି ଗୃଳି, ଦୁରୂହରେ କଷ୍ଟ ପଚାରିଲି,
ଦୀର୍ଘ ତପତ ନାସାନିଳ ତେଜିଲେ ଆହା ମରଇ ତ ବଚାରିଲି । ୫ ।
ଦେବ ଦଇବ ତୋ ଅଭିମତ, ଦୂର କର ଦ୍ୱାପରକୁ ଚେତ, *
ଦବନ୍ତୁ ଏ କଷ୍ଟପାକ ହେବ ଅଷ୍ଟଦୁର୍ଗନାଥର ଏ ବିରଚିତ । ୬ ।

(ଦ) ସମାଶ୍ୱସିହି ମାନିନି ତ୍ୱଦନ୍ତଧୈର୍ଯ୍ୟଜିଜ୍ଞାସୟା,
ନଟତ୍କପଟପାଟବଂ ତବ ପୁରଃ ପ୍ରଣୀତଂ ବଚଃ;
ଅମନ୍ଦମଧୁମନ୍ଦିରଂ କମରବିନ୍ଦବୃନ୍ଦଂ ବିନା—
ନୁବିନ୍ଦତି ମୁଦଂ ହୃଦନ୍ତରଗତଂ ମିଳିନ୍ଦୋ ଯୁବା ।

---

ସହଚରି, ହୃଦୟରେ କପଟ ନ ରଖି ଆଉ ବିଳମ୍ବ ନ କରି ସତ କରି କହ, ତମାଳଗଛ ଡାଳରେ ଦଉଡ଼ି ଦେଇ ପ୍ରାଣ ହରାଇବି, କି ଆଉ କିଛି ଦିନ ବଞ୍ଚିବି ?

ଏହା ଶୁଣି ଲଳିତା କହିଲେ—"ରେ ଦୁଃଖିଧନ" ଇତ୍ୟାଦି ।

(ଦ) ଦମ୍ଭ—ଧୈର୍ଯ୍ୟ, ଛନ କଲି—ଉଡ଼ାଇଲି, ନିଧି—ସମ୍ପତ୍ତି, ପ୍ରମୋଦନଦରେ—ଆନନ୍ଦସାଗରରେ, ଦୟା—ସ୍ନେହ, ଦନ୍ତବାସେ—ଓଠରେ, ଦରସ୍ମିତ—ଅଳ୍ପହାସ, ଅନାମୟ—କୁଶଳ ପ୍ରଶ୍ନ, ଘେନାଘେନ କରି—ଠେକାଠେକି କରି, ଦ୍ୟୁତି—ଶୋଭା, ଦ୍ୱିତୀୟାର ଶଶିଲେଖା—ଦ୍ୱିତୀୟା ତିଥିର ଚନ୍ଦ୍ରକଳା, ଇନ୍ଦ୍ରନୀଳହାଟି—ଇନ୍ଦ୍ରନୀଳମଣି-

---

* ପାଠାନ୍ତର—'ଚେତ' ସ୍ଥାନରେ 'ମିତ' ।

ପୁଷ୍ପିତାଂ ମାକନ୍ଦମଞ୍ଜରୀଂ ବନପ୍ରିୟ ଇବ, ସରୋଜନୀଂ ଯୁବରୋଲମ୍ବ ଇବ, ଚନ୍ଦ୍ରିକାଂ ଚକୋର ଇବ, ପ୍ରତ୍ୟଗ୍ରମୁଦିରମଣ୍ଡଳୀଂ ଚାତକ ଇବ, ଚନ୍ଦ୍ରାମଣିମକାଞ୍ଚନ ଇବ, ଭାମନବରତଂ ବଲ୍ଲବମହାମହେନ୍ଦ୍ରନନ୍ଦନାନନ୍ଦଃ ସ୍ମରନ୍ କିଶୋରଃ ସୀଦତି, ତ୍ୱଂ କଥଂ ବ୍ରୋଦନେନ ରୋଦୟସି ତ୍ରୋଦସୀ ।

---

ଶୋଭାଧାରୀ ହସ୍ତୀପରି ଆକୃତିବିଶିଷ୍ଟ ସେହି ଶ୍ରୀକୃଷ୍ଣ; ଦୁର୍ବାର—ଅନିବାର୍ଯ୍ୟ, ଯନ୍ତ୍ରଣାପ୍ରଦ ଦିବାଲ୍ପ—ଦୁର୍ବଳ, ମଜ୍ଜା—ହୃଦୟସ୍ଥସାରବଳ, ମାଳସ—ଆଳସ୍ୟଯୁକ୍ତ, ଦୁରୂହରେ—ଦୁଃଖରେ; ନାସାନିଳ—ନିଶ୍ୱାସ ପବନ, ଅଭିମତ—ଅଭିଷ୍ଟ ଫଳ; ଦ୍ୱାପର—ସନ୍ଦେହ (ଦ୍ୱାପରୌ ଯୁଗ ସଂଶୟୌ), ଚେତ—ମନେ ରଖ, ଦବିଷ୍ଠ—ଦୂରତମ ।

ଅନୁବାନ—(ଦ) ଅୟି ମାନିନି ରାଧେ, ଆଶ୍ୱସ୍ତହୁଅ; ତୋର ଧୈର୍ଯ୍ୟ ଜାଣିବା ଇଚ୍ଛାରେ ମୁଁ ତୋ ଆଗରେ ଯେପରି କପଟତାପୂର୍ଣ୍ଣ କଥା କହିଲି ସିନା ! ଭ୍ରମରଯୁବକ ମଧୁପରିପୂର୍ଣ୍ଣ ପଦ୍ମପୁଷ୍ପର ଅଭ୍ୟନ୍ତର ଛଡ଼ା ଅନ୍ୟତ୍ର ହୃଦୟସ୍ତବମୋହନ ଆନନ୍ଦ ପାଏ କି ?

କୋକିଳ ଯେପରି ପୁଷ୍ପିତ ଚୂତମଞ୍ଜରୀକୁ, ଭ୍ରମର ଯୁବକ ଯେପରି ପଦ୍ମିନୀକୁ, ଚକୋର ଯେପରି ଚନ୍ଦ୍ରିକାକୁ, ଚାତକ ଯେପରି ନବ ମେଘମାଳକୁ, ଦରିଦ୍ର ଯେପରି ଚନ୍ଦ୍ରାମଣିକୁ ସର୍ବଦା ସ୍ମରଣ କରି ଦୁଃଖରେ କାଳ କାଟନ୍ତି, ସେହିପରି ନନ୍ଦନନ୍ଦନ କିଶୋର ଶ୍ରୀକୃଷ୍ଣ ସବୁବେଳେ ତୋତେ ସ୍ମରଣ କରି କରି ଦୁଃଖିତ ହୋଇ ରହିଅଛନ୍ତି । ଏହିପରି ଅବସ୍ଥାରେ ତୁ କାହିଁକି କାନ୍ଦି କାନ୍ଦି ଆକାଶ ପୃଥିବୀକୁ କନ୍ଦାଉଅଛୁ ।

ଏହା ଶୁଣି ରାଧା କହିଲେ—"ଧୀରା ରେ…"ଇତ୍ୟାଦି ।

---

(ଧ) ଧୀରା—ପଣ୍ଡିତା, ଯୁବରାଜ—ଯୁବକଶ୍ରେଷ୍ଠ, ଧୃପି ଦେଇ—ବଢ଼ାଇ ଦେଇ, କଳାଦ୍ୱିଜରାଜ—କୃଷ୍ଣଚନ୍ଦ୍ର, ଧୁରନ୍ଧର—ନିପୁଣ, ଇଙ୍ଗିତେ—ଅଙ୍କା କରିବାରେ, ଧରିଥିଲୁ—ସାହସ କଲୁ, କେହି—କପରି, ଧମକାଇଲୁ—ଡରାଇଲୁ, ବ୍ୟଜ—ସୁଧ ବା କଳନ୍ତର (ଉର୍ଦ୍ଦୁ—ବେଆଜ), ଧୃତ—ଧୈର୍ଯ୍ୟ, ଧୂସର—ମଳିନ, କଳଙ୍କସମାଜ—ଖେଦସମୂହ, ମାଜ—ପରିଷ୍କାର କରିଦିଅ, ବଲ୍ଲବୀ—ଗୋପୀ, ରାଧା; ବଲ୍ଲବ—ଗୋପାଳ, ଶ୍ରୀକୃଷ୍ଣ; ଧରାଧୂଳି—ବାସସ୍ଥାନର ଧୂଳି, ତାଜ—ମୁକୁଟ, ଭୂଷଣ ।

ଅନୁବାଦ—(ଧ) ହେ ସଖି, ତୁ ଏହି କଥାଗୁଡ଼ିକ କହି ମୋତେ ଆଜି କି ସମ୍ପତ୍ତି ନ ଦେଲୁ ? ହେ ହର୍ଷମୁଖି ଚନ୍ଦ୍ରାନନେ, ତୋର ଏହି ଅନୁକୂଳ ବାକ୍ୟଗୁଡ଼ିକ ମୋ ସୁଖରୂପ ଲତାର ବୀଜସମୂହ ବା ମୂଳ କାରଣ ପରି ହୋଇଅଛି ।

# ଧ

ରାଗ—କନଡ଼ାକାଫି ବା ଚୋଢ଼ଭଙ୍ଗଳ

ଧୀର ରେ କି ଧନ ତୁ ନ ଦେଲୁ ଆଜ
ଧଇଲେ କି ସତେ କର ଯୁବରାଜ । ପଦ ।

ଧରମ ବନ୍ଧୁ କି ମୋର, ଧପି ଦେଇ ନିଜ କର,
କୋଳକୁ ଆଣିଲୁ କଳାଦ୍ୱିଜରାଜ । ୧ ।
ଧୂରନ୍ଧର ସେ ଇଙ୍ଗିତେ, ଧରଷିଲୁ କେଣ୍ଠେ ସତେ,
ଧମକାଇଲୁ ନାହିଁ କି କଣ୍ଠ ଲାଜ । ୨ ।
ଧବରେ ଯେତେ ସୁ ରୁଷେ, ଧୂଉଁ ତାହାଙ୍କ ଗୁ ରୁ ସେ
ଧନରୁ ଯେ ବଳେ ତାହାଙ୍କର ବ୍ୟାଜ । ୩ ।
ଧୃତ ହୋଇ ବଳହୀନ, ଧୂସର ହୋଇବା ମନ,
ଧୋଇ ଚିନ୍ତା କଳଙ୍କସମାଜ ମାଜ । ୪ ।
ଧରଣୀନ୍ଦ୍ର ଜଗଦ୍ଦେବ, ଧ୍ୟାନେ ବଲ୍ଲବୀବଲ୍ଲବ-
ଧବଧୂଳି କରେ ମସ୍ତକରେ ତାଜ । ୫ ।

(ଧ) ଭୂତରଦ୍ୟ ସଖି କିଂ ନ ବର୍ଣ୍ଣ୍ୟତାଂ, ଯନ୍ମମ ଶ୍ରବଣସୀମ୍ନି ବର୍ଣ୍ଣିତାଂ,
ଖାଜଂରାଜରିବ ଶର୍ମିଳତାୟାଃ, ସର୍ପିଚେଦ୍ଦୁମୁଖି ବାଗନୁକୂଳା ।

ଘର୍ମୋର୍ମିତପ୍ତାଙ୍କୁରଶ୍ରେଣ୍ୟାଃ ତୃଷ୍ଟାଦବୃଷ୍ଟିରିବ, ରଜନ୍ୟାଃ କୌମୁଦୀବ, ତମଃସମୂହକବଳିତଶ୍ରିଯୋ ଗୃହଲେଖାୟା ଦୀପଶିଖେବ, ଯତଚିତ୍ତବୃତ୍ତେର୍ବ୍ରହ୍ମାନନ୍ଦଧାରେବ ସାମ୍ପ୍ରତଂ ମମ ଭୂମସି ।

---

ପ୍ରଚଣ୍ଡ ଗ୍ରୀଷ୍ମରେ ମଳ୍ପ ପରି ହୋଇଥିବା ବୃକ୍ଷର ଅଙ୍କୁର ପକ୍ଷରେ ନବବୃଷ୍ଟି ଧାରା ପରି, ରାତ୍ରିପକ୍ଷରେ ଚନ୍ଦ୍ରକିରଣ ପରି, ଅନ୍ଧକାରାଚ୍ଛନ୍ନ ଗୃହସମୂହ ପକ୍ଷରେ ଦୀପଶିଖା ପରି ଏବଂ ସଂଯତଚିତ୍ତ ମୁନିଙ୍କ ପକ୍ଷରେ ବ୍ରହ୍ମାନନ୍ଦଧାରା ପରି ତୁ ବର୍ତ୍ତମାନ ମୋ ପକ୍ଷରେ ଅତ୍ୟନ୍ତ ଆନନ୍ଦଦାୟିନୀ ହେଲୁ ।

ଏହା ଶୁଣି ଲଳିତା କହିଲେ,—"ନବବଳାସିନ ରେ" ଇତ୍ୟାଦି ।

# ନ

ରାଗ—କାମୋଦୀ

ନବବିଳାସିନୀ ରେ, ନିଶାକେଶ-ହାସିନୀ । ପଦ ।
ନାହିଁ ବୋଲିବା ବାଣୀ ନିପଟ ନାହିଁ ଶୁଣି,
ନଳିନାକ୍ଷିରେ ହୋଇ କିସ ହେବ,
ନନ୍ଦନନ୍ଦନ ପ୍ରେମା, ପ୍ରେମାରେ ନୁହେ ଜମା,
ନିତମ୍ବିନୀଙ୍କି ଯେବେ ଗତି ଥିବ । ୧ । *
ନିଷ୍ଠୁର ଗୁଣ କୁଳି- ଶରୁ ପଡ଼ିଛି ବଳି,
'ନିଷ୍ଠୁର' ତିନି ବର୍ଣ୍ଣ ନାହିଁ ଲେଖି,
ନାଗରବରମୋହନ, ମନ୍ତ୍ର ମାଣିକ ମନ
କପଟ ସମ୍ପୁଟରେ ଅଛି ରଖି । ୨ ।

---

ନବବିଳାସିନି—(ନ) ହେ ନବରସିକେ; ନିଶାକେଶହାସିନି—ହେ ଚନ୍ଦ୍ରହାସିନି; ନିପଟ—ଆଦୌ, କେବେହେଁ; ନଳିନାକ୍ଷି—ହେ ପଦ୍ମନେତ୍ରି; ପ୍ରେମା—ପ୍ରେମ, ପ୍ରେମାରେ ନୁହେଁ ଜମା—ଆଦୌ ପ୍ରେମ ପଥବାଚ୍ୟ ନୁହେଁ; ନିତମ୍ବିନୀ—ନିତମ୍ବବତୀ ଯୁବତୀ ସ୍ତ୍ରୀ; କୁଳିଶ—ବଜ୍ର; ମନକପଟସମ୍ପୁଟରେ—ମନରୂପ କପଟ ଫରୁଆରେ; ନିରନ୍ତରରସ୍ଥ—ଅନ୍ତରସ୍ଥ ରହିତ ଅର୍ଥାତ୍ ବାଧାଶୂନ୍ୟ; ରସ ପ୍ରସାରଣେ—ରସ ବିସ୍ତାର କରିବାରେ; ହାଳାହଳ—ବିଷ; ଦଙ୍ଗାଳି—ପ୍ରିୟବସ୍ତୁ; ବିସିନୀଦଳ—ପଦ୍ମପତ୍ର; ନୀପବନପବନ—କଦମ୍ବକାନନସଞ୍ଚାରୀ ବାୟୁ; ନିର୍ଧୂମଶିଖ—ଧୂଆଁ ନ ଥିବା ଶିଖା ଯାହାର; ଧନଞ୍ଜୟ—ଅଗ୍ନି; ମନ୍ଦାରଚମ୍ପକୁରୁବିନ୍ଦାଧରା—ମନ୍ଦାର (ମନ୍ଦାରଫୁଲ), ଚମ୍ପ (କଇଁଶିକାଖୁଡ଼ି) ଓ କୁରୁବିନ୍ଦ (ପଦ୍ମରାଗ ମଣି) ଏମାନଙ୍କର ବର୍ଣ୍ଣ ପରି ଅଧର ଅର୍ଥାତ୍ ଓଠ ଯାହାର; ନିଶାରମଣକର କଳିକାକଣ—ଚନ୍ଦ୍ରକିରଣବିନ୍ଦୁ; କଲ୍ପାନ୍ତକାଳ—ପ୍ରଳୟ କାଳ; ନବବରଷରୁ ଊଣା କାଳୁ—୯ ବର୍ଷରୁ ଅଳ୍ପ ବୟସ ହୋଇଥିବା ସମୟରୁ; ଉଦ୍ଧରିଲ—ଟେକି ଧରିଥିଲ; ନବନୀରଜକୋଷନିନ୍ଦ—ନୂତନ ପଦ୍ମକଢ଼ ସଦୃଶ; କଣ୍ଠୀରବମଧ୍ୟା—ସିଂହକଟି ଅର୍ଥାତ୍ କ୍ଷୀଣକଟି, କୃଶାଙ୍ଗୀ; କରକଞ୍ଜ—କରପଦ୍ମ; ନିଦ୍ରାହାରେ—ଶୋଇବାରେ ଓ ଖାଇବାରେ; ନୀଳବାହୁ—ନୀଳବର୍ଣ୍ଣ ବାହୁର (ଶ୍ରୀକୃଷ୍ଣଙ୍କର); ମୁଦ୍ରାହାରେ—ଆଲିଙ୍ଗନରୂପକ ହାରରେ ।

---

* ପାଠାନ୍ତର—ନନ୍ଦନନ୍ଦନ ପ୍ରେମ-ବଣେ ନୋହିବ ଭ୍ରମ, ନିତମ୍ବିନୀଙ୍କ ଯେବେ ରତି ଥିବ ।

ନିରନ୍ତରସ୍ଥ ରସ- ପ୍ରସାରଣେ ପୀୟୂଷ-
ଧାରଧିକ୍‌କାରକାଶ୍ର ପର ଲାଗେ,
ନିମିଷକରେ ଜ୍ୱାଳା ଜନ୍ମାଏ ଜଣି ହାଳା-
ହଳକୁ ଯେ ସଙ୍ଗୀତ ମହାନାଗେ । ୩ ।
ନିଶି ଦିନ ଶୟନ ନ ଜାଣଇ, ନଗୀନ
ବସିମାଦଳ ଶେଯ ଯାଏ ଜଳି,
ମାପବନ ପବନ ନିଛୁ ମଣିଖ ଧନ-
ଞ୍ଜୟ୍ୟ ଝାସରୁ କରେ କଣ୍ଟୁକେଳି । ୪ ।
ନନ୍ଦାର ନିକେତନ ହୋଇବୁ ରେ ନୂତନ
ମନ୍ଦାର-ବନ୍ଧ-କୁରୁବକାଧର,
ନିଶା-ରମଣ-କର— କଳିକା-କଣ ଚୋର,
ହୋଇଯିବ କଳ୍ପାନ୍ତକାଳ ଖର । ୫ ।
ନ ବରଷରୁ ଉଣା କାନ୍ତୁ ତ ଅଛୁ ଜଣା
ନଖାଗ୍ରେ ଉଦ୍ଧରିଲ ଗୋବର୍ଦ୍ଧନ,
ନବମାରଜ କୋଷ- ନିଭ ତୋ କୁଚ କଷ
ଅଣିବ କର୍ଣ୍ଣୀରବମଧ୍ୟା ହେନ । ୬ ।
ନିବେଦନ କରୁଛି କରକଞ୍ଜ ଧରୁଛି,
ହେଲେ ହେଉ ଅରୁଚ ନିଦ୍ରାହାରେ,
ନରନାଥ ଶ୍ରୀହର- ଚନ୍ଦନ ବନ୍ଦେ ଗୋର
ନ ରସ ମାଳବାହା ମୁଦ୍ରାହାରେ । ୭ ।

(ନ) ମଦ୍‌ବଜ୍ଞାପନମାଦରେଣ ମହତା ସିଂଭ୍ଯାନଯ୍ଯଭ୍ର କେଶବଃ,
କର୍ଣ୍ଣାଭ୍ୟର୍ଣ୍ଣମପଶ୍ୟମୀଶ୍ୱର ତଥା ଭଙ୍ଗୀସ୍ତଦଙ୍ଗୀକୃତେଃ;
ସତ୍ୟଂ ତାବଦତଂ ତଥାପି ସୁଦୃଶାଂ ଗତ୍ୟନ୍ତରଂ ଚେଦ୍‌ଭୁବ,
ପ୍ରେମା ତସ ବତେ ଶିଖଣ୍ଡମୁକୁଟେ ଧ୍ୟେୟୋ ନ ହେୟଃ ପରଂ ।

କୃଷ୍ଣଂ କୃଷ୍ଣବର୍ତ୍ମାନମିବ ଶଲଭରଜବଶ୍ରିତ୍ୟ ଭ୍ବାଦୃଶାଂ ବାମଭ୍ରୂବାଂ ଚେତୋବୃତ୍ତଃ ଶତମୈତର୍ଗ୍ନିମିନୁଭବନ୍ତ ।

---

ଅନୁବାଦ—(ନ) ହେ ଈଶ୍ୱର, କେଶବ ମୋ ପ୍ରାର୍ଥନାକୁ ହସି ହସି ଅତ ଆଦରରେ ଶୁଣିଲ ଏବଂ ତାହାର ଅଙ୍ଗୀକାରଭଙ୍ଗୀ ମଧ୍ଯ ପ୍ରତ୍ୟକ୍ଷ କଲ ଏହା ସତ୍ୟ, ତଥାପି

# ୨

ରାଗ—ଭୈରବ

ପ୍ରିୟସଖି, ପରମାଦ ବଡ଼ ଭୁଞ୍ଜି ଗୋ
ପାଁରୁ କେତେ ଛନ୍ଦେ ମୋଞ୍ଜି ଗୋ । ପଦ ।

ପରମପଦରେ ଦେଇ ଜାଣୁ ଛୁ ବସାଇ, ପୁଣି ଚହୁଁ ଜାଣୁ ତଳାତଳକୁ ଖସାଇ
ପାଶୋରାଇ ମନ୍ମ ନାନା କଦନ ଲସାଇ, ପୀଡ଼ୁ ଅଶ୍ରୁ ବରଷାଇ ଗୋ । ୧ ।
ପ୍ରପଞ୍ଚପାକରେ ଜଣା ନ ଥାଇ ସଂଶୟ, ପସନ୍ଦ ନୁହଇ ପରପୁରୁଷରେ ସ୍ନେହ,
ପରବଶ ହେବ ଯେବେ ପ୍ରାଣଭୁଲେ ଦେହ, ପ୍ରାଣୀ କି କରିବ କହ ଗୋ । ୨ ।
ପରବଚନ୍ଦ ଚପୁଡ଼ ପିଇବା ପୀୟୁଷ, ପରିଣତ ସମୟେ ସେ ହେବ ଯେବେ ବିଷ,
ପ୍ରପନ୍ନ ହେବା ଗଙ୍ଗାରେ ଜନ୍ମିଲେ କଲ୍ମଷ, ପ୍ରୟୋଗ କରିବା କିସ ଗୋ । ୩ ।
ପିଆଇ ଦୁହିଙ୍କି ଥରେ ଦୁହିଙ୍କ ଅଧର, ପଛେ କହ ଆଚରଣ ପୂତନାବଧର,
'ପୀତପଟନଟ' ନାଁ ମୋ ଆଗରେ ନ ଧର, ପାଳଏ ମାନ ଉଦ୍ଧର ଗୋ । ୪ ।
ପୁରନ୍ଦରମଣି ଶ୍ୟାମେ ଅଛୁ ମୋ ଭରସ, ପରପରିବାଦମୁଣ୍ଡେ ଟାକର ବରଷ,
ପୃଥ୍ୱୀଚକ୍ରବାଳ ପରିବୃତ୍ତ ବାଲୁକେଶ, ପ୍ରସରାଇଲେ ଏ ରସ ଗୋ । ୫ ।

---

ଏ ସଂସାରରେ ସୁନ୍ଦରୀ ନାରୀମାନଙ୍କର ଯେବେ ଅନ୍ୟ ଗତି ଥିବ, ତେବେ ସେମାନେ ସେହି ମୟୂରଚୂଳିଆ ଧୂର୍ତ୍ତଠାରେ ପ୍ରେମକଥା କେବେ ହେଲେ ମନେ କରିବେ ନାହିଁ, ବରଂ ତାଙ୍କୁ ହେୟ ଜ୍ଞାନ କରିବେ ।

ଯେପରି ପତଙ୍ଗକୁଳ ଅଗ୍ନିକୁ ଆଶ୍ରୟ କରି ଘୋର ଦୁଃଖ ଅନୁଭବ କରନ୍ତି, ସେହିପରି ତୋ ଭଳି ସୁନ୍ଦରୀ ନାରୀମାନଙ୍କର ଚିତ୍ତବୃତ୍ତି କୃଷ୍ଣଙ୍କୁ ଆଶ୍ରୟ କରି ଘୋର ଦୁଃଖ ଅନୁଭବ କରୁଅଛୁ ।

ଏହା ଶୁଣି ଘୋର ସଂଶୟାକୁଳ ହୋଇ ରାଧା ଦୂତୀଙ୍କୁ କହୁଅଛନ୍ତି—
"ପ୍ରିୟସଖି, ପରମାଦ ବଡ଼ ଭୁଞ୍ଜି ଗୋ" ଇତ୍ୟାଦି ।

---

(୨) ପରମାଦ—ପ୍ରମାଦ, ଏଠାରେ ଦୁଃଖଦାୟିନୀ; ପରମପଦ—ସର୍ବୋତ୍କୃଷ୍ଟ ସ୍ଥାନ, ସ୍ୱର୍ଗ; ତଳାତଳ—ପାତାଳ; କଦନ—ଦୁଃଖ, କଷ୍ଟ; ଲସାଇ—ତରଳାଇ, ଏଠାରେ ଦୂର କରି; ପୀଡ଼ୁ—ପୀଡ଼ା ଦେଉ; ପ୍ରପଞ୍ଚ—ସଂସାର; ସଂଶୟ—ସନ୍ଦେହ; ଭୁଲେ—ସହିତ; ପରବଚନ୍ଦ୍ର—ପୂର୍ଣ୍ଣିମାଚନ୍ଦ୍ର; ପରିଣତ ସମୟେ—ପରିପାକ ବେଳେ; ପ୍ରପନ୍ନ—ଆଶ୍ରିତ, ଯାହାକୁ ଆଶ୍ରୟ କରନ୍ତି (କର୍ମବାଚ୍ୟରେ ତ); କଲ୍ମଷ—ପାପ; ପୀତପଟ—ପୀତବସ୍ତ୍ର ପରିଧାନକାରୀ; ନଟ—ଦୁଷ୍ଟ; ନାଁ—ନାମ; ପାଳଏ—ଅରେ; ପୁରନ୍ଦରମଣି—ଇନ୍ଦ୍ରନୀଳମଣି

(ଘ) ମାମତ୍ତ୍ୱଂଲିହନବ୍ୟହବ୍ୟବଶ୍ଭଶ୍ରିଜ୍ଞର୍ଷ୍ୟ ହପର୍ଯ୍ୟଙ୍କିକା—
ସ୍ୱସ୍ଥାଂ ପ୍ରବଧାପ୍ୟ କ୍ଷିପସି କିଂ ତସ୍ମାଦଧୋଽଧଃ ପୁନଃ ।
ଆର୍ତ୍ତିସ୍ୟାତ୍ତପିପାସସ୍ୟାମୃତଝଙ୍ଗ୍ରାବାର୍ତ୍ତାଂ ନିବେଦ୍ୟ ଶ୍ରୁତୌ,
ଭୂୟଃ ଶମ୍ଭକଦମ୍ବକେଳିକଠିନାଂ କିଂ ଧାରଣାଂ ଲକ୍ଷସେ ।

ଜନ୍ତୋଃ ସନ୍ତତଚନ୍ଦ୍ରାରୁଦ୍ଧଦକୁନ୍ତମୁଖାଗ୍ରଦଳିତହୃଦୟସ୍ୟ ପିପାସାର୍ତ୍ତସ୍ୟ ବଦନାନ୍ତିକେ ସୁଧାସୁଧାରାଂ ବିନ୍ୟସ୍ୟ ମନ୍ତ୍ରମନ୍ତରେଣ ପୁନରାଚ୍ଛିଦ୍ୟ କୋ ବା ନିମ୍ନାଷତି ।

(ଶ୍ରୀକୃଷ୍ଣଙ୍କର ବିଶେଷଣ), ତରସ—ପୂର୍ଣ୍ଣ ଇଚ୍ଛା; ପରପରିବାଦ—ପରନିନ୍ଦା; ଝାକର—ମୁଷ୍ଟିବନ୍ଧ ଅଙ୍ଗୁଳିଗଣ୍ଠି ଦ୍ୱାରା ଆଘାତ କରିବା, ପୃଥ୍ୱୀଚକ୍ରବାଳ—ଚକ୍ରବାଳବ୍ୟାପୀ ସମଗ୍ର ଭୂଖଣ୍ଡ; ପରବୃଢ଼—ପ୍ରଭୁ, ପ୍ରସରିଲେ—ପ୍ରସାରିତ କଲେ ।

ଅନୁବାଦ—(ଘ) ହେ ସଖି, ମୋତେ ଆକାଶସ୍ପର୍ଶୀ ନୂତନ ସମୁଚ୍ଚ ସୁନ୍ଦର ଚନ୍ଦ୍ରଶାଳା ଉପରସ୍ଥ କାଠ ଥିବା ପଲଙ୍କରେ ଶୁଆଇ ଦେଇ କାହିଁକି ପୁଣି ତହିଁରୁ ତଳକୁ ଖସାଇ ପକାଇ ଦେଉଅଛୁ ? ଯେଉଁ ଲୋକ ଶୋଷରେ ଅତି ବିକଳ ହେଉଅଛୁ, ତା କାନ ପାଖରେ ଅମୃତଧାରା ମିଳିବାର ସମ୍ବାଦ ଦେଇ ପୁଣି କପର ବଜ୍ର ପରି କର୍କଶ କଥାଗୁଡ଼ାଏ କହୁଅଛୁ ।

ନିତ୍ୟଚନ୍ଦ୍ରାରୂପ କୁନ୍ତାଗ୍ରର ମୁନଦ୍ୱାରା ବିଦ୍ଧ ହୋଇ ଯାହାର ହୃଦୟ କଷ୍ଟ ପାଉଅଛୁ, ସେଭଳି ଜୀବର ମୁଖ ପାଖରେ ଅମୃତଧାରା ଢାଳି ବିନା ଦୋଷରେ ପୁଣି ତାକୁ ତା ଆଗରୁ କାଢ଼ିନେବାକୁ କେଉଁ ଲୋକ ଇଚ୍ଛା କରେ ?

ଏହା ଶୁଣି ଲଳିତା କହିଲେ—"ଫାଟି ପଡ଼ିବାର ନିକୁଞ୍ଜପଞ୍ଚାର" ଇତ୍ୟାଦି ।

---

(ଙ) ନିକୁଞ୍ଜପଞ୍ଚାରଶ୍ରମ—କୁଞ୍ଜବନକୁ ଯିବା-ଆସିବା ପରିଶ୍ରମରୁ, ଚରଣତଳ—ତଳିପା, ଫତୁରଖୋର—ମିଥ୍ୟାଭର୍ତ୍ସଣୀ, ଆଖରକୁ—ଶେଷକୁ, ଫୁଲଲଲ୍ଲମଉସିକା—ପୁଷ୍ପଭୂଷଣପ୍ରିୟା, ଫନ୍ଦାଇ—ଭୁଲାଇ, ତୁଣ—ଝୁଟା; ଫନ୍ଦାଧନ—ଉପାର୍ଜନର ଆଗ୍ରହ, ଫରିଆଦ—ଅଭିଯୋଗ, ନାଲିଶ୍; ଉରେଜ—କୁଚ, ଫଉଜ—ସୈନ୍ୟ, ନୀଳମଣି—ଶ୍ରୀକୃଷ୍ଣ ଅର୍ଥରେ, ବେତ୍ରବଲ୍ଲୀଧାରିଣୀ—ବେତ ଧରିଥିବା ପ୍ରତିହାରୀ ବା ଦ୍ୱାରପାଳିକା, ଫରମାସ—ବରାଦ କର, ଆଦେଶ କର; ଫେଇଦିଅ—ସାରିଦିଅ ବା ଖୋଲିଦିଅ, ଆବୁର—ଆବ୍ରୁ—ମାନମହତ; ଫଜିତ—ଅପମାନିତ ଭଜିତ—ଆଜ୍ଞା; ଅଷ୍ଟଶ୍ରୁତି—ବ୍ରହ୍ମା, ପ୍ରଜାପତି (ସ୍ତ୍ରୀ ପୁରୁଷଙ୍କର ମିଳନବିଧାୟକ ଦେବତା), ଫୁରୁଣା—



ରାଗ—ପୂରବ ବା ଛୋଡ଼ପରଜ

ଫାଟି ପଡ଼ିବାର ନିକୁଞ୍ଜସଞ୍ଚାର ଶ୍ରମୁଁ ମୋ ଚରଣତଳ,
ଫଭୁରଖୋର ଆଖରକୁ ହେବାର ଏହ୍ଵ ଏକା ଏଥୁ ଫଳ,
ରେ କିଶୋର, ଫିଟିଗଲା ଯେ ସନ୍ଦେହ,
ଫୁଲିଗଲୁ ଫୁଲଲମ୍ପରସିକା ଜାଣି ପରା ଶ୍ୟାମସ୍ନେହ ରେ । ୧ ।
ଫନ୍ଦାଇ ନାନା ବନପ୍ୟେ କହ୍ଵ ଦନ୍ତେ ତୃଣ ଧରବାର ଗଲା,
ଫଣା କପାଳରେ କୁଟିଳ ହୃଦୟା ବୋଲାଇବା ଲେଖା ଥିଲା,
ରେ କିଶୋର, ଫନ୍ଦାଧନ ତୁ ତ ମୋର,
ଫରିଆଦ କାହିଁ ତୋ ନାମେ କରିବ ନନ୍ଦା କଲେ ଘଟେ କର ରେ ॥
ଫରୁଆରେ ପର ଉରଜରେ ଭରି ରଖ ଯେ ନୀଳମଣିକି,
ଫଉଜତୁଲେ କୁଞ୍ଜଦ୍ଵାରେ ରଖାଅ ବେଣବଲ୍ଲୀଧାରଣୀକି,
ରେ କିଶୋର, ଫରମାଏ ମନେ ମନେ,
ଫେଇଦେଅ ତୁ ମୋ ଆବୁର ମୁ ଯେବେ ଯିବି ସେ ବାଗକୁ ଦିନେ ରେ ॥
ଫକତ ହୋଇ ଦୂରରେ ଥିଲେ ତୋତ ଭକତ ଥିବାର ସତ,
ଫେଡ଼ନ୍ତୁ ତୋ କଷ୍ଟ ସୁଖ ଦେଇ ଅଷ୍ଟଶ୍ରୁତ ଏ ଆମ୍ଭ ବାଞ୍ଛିତ,
ରେ କିଶୋର, ଫୁରୁଣା ହୋଇ ତୁ ରସ,
ଫେରିଆସି ମାନ ଆମ୍ଭ ଆଗେ ନେତ୍ରକଞ୍ଜୁ ନୀର ନ ବରଷ ରେ । ୪ ।
ଫୋଟକା ହେଉଛୁ ସିଞ୍ଚିବା କର୍ପୂରଚନ୍ଦନମିଶ୍ରିତ ବାରି, *
ଫୁଙ୍କିଦେଲେ ଉଡ଼ିଯିବା ପରି ପଡ଼ିଅଛୁଟି ତନୁ-ବଲ୍ଲରୀ,
ରେ କିଶୋର, ଫୁକାରା ନୋହୁ ଜଗତେ,
ଫତୁଆ ନୁହଟି ବୋଲେ ଜଗଦ୍ଦେବ ହରଚନ୍ଦନ ଗୀତେ । ୫ ।

---

ପୂର୍ଣ୍ଣମନୋରଥ, ନେତ୍ରକଞ୍ଜୁ—ଚକ୍ଷୁରୂପ ପଦ୍ମରୁ, ବାରି—ଜଳ, ପଡ଼ିଅଛୁ—ଦୁଃଖରେ ଶୀର୍ଣ୍ଣ ହୋଇଅଛୁ, ତନୁବଲ୍ଲରୀ—ଶରୀରରୂପ ଲତା, ଫୁକାରା—ପ୍ରଚାରିତ, ଫତୁଆ—ଅକୃତକାର୍ଯ୍ୟ ।

ଅନୁବାଦ—(ଫ) ହେ ଈଶ୍ଵର, ମୁଁ ତୁମ ଘରୁ କୁଞ୍ଜ ପର୍ଯ୍ୟନ୍ତ ଏବଂ କୁଞ୍ଜବନରୁ ତୁମ ଘର ପର୍ଯ୍ୟନ୍ତ ଯିବା-ଆସିବା କରିବାରେ ଯେଉଁ ପାଦଭ୍ରମ କରିଥିଲି, ତାହାର ଫଳ

---

* ପାଠାନ୍ତର—ଫୋଟକା ହେଅଛୁ ଶ୍ରୀଅଙ୍ଗେ ସିଞ୍ଚିଲେ କର୍ପୂରଚନ୍ଦନ ବାରି ।

*

(ଙ) ଆକୁଞ୍ଚଂ ଭବନାଦ୍‌ବନାଦପି ତବାଽଗ୍ରାଉଗ୍ଙ୍କ ସୌଧୋଦରଂ,
ଯାତାଯ୍ୱାତ ପଦାନ୍ତପାତଜଫଳଂ ଲବ୍‌ଧଂ ମୟେତଃ ପରଂ ।
ଅନ୍ୟାପେକ୍ଷିତଶୂନ୍ୟମୀଶ୍ୱରୀ ଯୁବାମନ୍ୟୋନ୍ୟଦୌତ୍ୟେନ ତତ୍,
ସୌଭଗ୍ୟଂ ବତତଂ ମୁଦାନୁଭବତଂ ନାୟାମି ମାୟାବନୀ ।
ହାହା ଚନ୍ଦ୍ରକଚନ୍ଦ୍ରାନନ୍ଦନଚରତେ, ମାମପ୍ରତ୍ୟପ୍ରଦୂତ୍ୟବଶିଷ୍ଟାଂ ନ
ନବକୃତ୍ୟ ପ୍ରତ୍ୟହଂ ପ୍ରତ୍ୟୂହପ୍ରତିହନ୍ୟମାନମନୋରଥମଞ୍ଜରୀଫଳାଲଭସି ।

---

ପାଇଲଣି, ଏହା ପରେ ତୁମ୍ଭେ ଦୁହେଁ ଅନ୍ୟକୁ ଅପେକ୍ଷା କରି ନଜେ ନଜର ଦୂତ ହୋଇ ସୁ ସୁ-ସୌଭାଗ୍ୟସୁଖ ଅନୁଭବ କର, ମୁଁ ମାୟାବନୀ ଆଉ ଆସିବ ନାହିଁ ।

କ ଦୁଃଖର କଥା ! ହେ ଶ୍ରୀକୃଷ୍ଣପ୍ରମୋଦନ, ଅବଶ୍ୟାସିନୀ ମୋତେ ଦୂତୀ କରିବାକୁ ତୁମ୍ଭେ ପ୍ରତଦନ ବଫଳମନୋରଥ ହେଉଅଛ ସିନା !

ଏହା ଶୁଣି ରାଧା ଉତ୍ତରେ କହୁଅଛନ୍ତି—"ବଚକ୍ଷଣା ରେ" ଇତ୍ୟାଦ ।

---

(ଚ) ବଚକ୍ଷଣା—ହେ ବୁଦ୍ଧିମତ, ଜଗତରେ—ସଂସାରରେ, ପାଣି—ଫାଶ, ବଶ୍ୱମ୍ଭରଜଖେଳ କାର୍ଯ୍ୟ—ପୃଥ୍ୱୀରେ ଧୂଳି ଖେଳିବା ପ୍ରମୟରୁ ଅର୍ଥାତ୍ ପିଲାଦନୁ, ବନ୍ଧୁଃପ୍ରାଣ—ତୋ ନଜ ଜୀବନ ଯାହା କ ତୋ ହାହାରେ ଅଛ, ନସର୍ଗ କୃପାଳୁ—ଅପୂର୍ବ ଦୟାଶୀଳା, ବ୍ରଜେ—ଗୋପପୁରରେ; ବହୁରଙ୍ଗେ—ଯେଉଁମାନେ ଅନ୍ତରଙ୍ଗ ବା ଆତ୍ମୀୟ ନୁହନ୍ତ ସେମାନେ, ଅଗଣ—ଅସଂଖ୍ୟ, ମଘବା—ଇନ୍ଦ୍ର, ରାଜା, ବଲ୍ଲୀ—ଲତା, ବଲ୍ଲବରୀ ନ ପାନ୍ତୁ—ରତ ନ ପାନ୍ତୁ ।

ଅନୁବାଦ—(ଚ) ଅୟି ସଖି, ପରିହାସରେ କହିବା ସାମାନ୍ୟ ଅତଥ୍ୟ କଥାକୁ ଏ ପୃଥ୍ୱୀରେ କେଉଁ ସଖୀ ହୃଦୟରେ ଧରି ରଖେ ? ସଂସାରରେ ତୁ ମୋର କପରି ଦୁଚ୍ଛେଦ୍ୟ ବନ୍ଧୁ, ସମସ୍ତେ ଜାଣନ୍ତି; କଥାରେ କହିଲେ ପିଷ୍ଟପେଷଣ ବା ପୁନରୁକ୍ତି ହେବ ସିନା !

ତୋ ପରି ରସିକା ପ୍ରାଣବନ୍ଧୁ ଛଡ଼ା ଏ ଗୋପପୁରରେ ଏପରି କୌଣସି ନପୁଣା ଗୋପକନ୍ୟା ଅଛ, ଯେ କ ମୋ କଥାରେ ନଷ୍ଠୁରତା ଆଲୋଚନା କରି ପାରିବ ? ସଖି ଟିକିଏ ଧୈର୍ଯ୍ୟ ଧର, ଯେବେ କଛ ଅନୁଚତ କଥା କହୁଛି, ତେବେ ତାହା ଭୁଲିଯାଇ ଆ ଯିବା; ଲତା ଆଢୁଆଳରେ ଲୁଚିରହି ଯେଉଁ ସ୍ଥାନରେ ସେ ଯୁବତୀଜନଙ୍କର ଜୀବନ-ବନାଶ କରିବାପାଇଁ କଟାକ୍ଷଜାଲ ବସ୍ତାର କରୁଅଛନ୍ତି ଏବଂ ତାଙ୍କର ଭ୍ରମଣ ବାଳାସରେ ଯେଉଁ ସ୍ଥାନ ରମଣୀୟ, ସେହ ଅରଣ୍ୟଖଣ୍ଡର ଶୋଭା ପରସ୍ପରକୁ ଦେଖାଇବା । ଏହା ନଶ୍ଚୟ କରିବା ପରେ ରାଧା କନ୍ଦର୍ପର ବଜୟଡିଣ୍ଡିମ ଶବ୍ଦକୁ ଅନୁକରଣ କରୁଥିବା ନୂପୁର

# ୭

## ରାଗ—ସାବେରୀ

ବିଚକ୍ଷଣା ରେ, ବିନା ତୋ ପ୍ରୀତି କେ ଗତି ଅଛି ଜଗତରେ । ପଦ ।
ବୋଲି ଦେଲି ସିନା ଗଲେ ହସି, ବିଶ୍ୱେ ତୋ ସମ କାହିଁ ବିଶ୍ୱାସୀ,
ବାନ୍ଧିବାକୁ ମୋ ମନକୁ ପାଶି,
ବିଶେଷରେ ମୋ ହୃଦନ୍ତର ଜାଣିଛ ଜଣାରେ । ୧ ।
ବିଶ୍ୱମ୍ଭରନାଗରଶେଖରଙ୍କୁ   ବନ୍ଧୁଃ-ପ୍ରାଣ ପର ପରିପାକୁ
ବାନ୍ଧିବସୁ ନିସର୍ଗକୃପାକୁ,
ସ୍ମରି ହେଉଛି ଏହି ଭଙ୍ଗିମ ବାଜଣାରେ । ୨ ।
ବିଟେ କେଣେ ଯେ ଯାହାକୁ ସ୍ନେହେ, ବଡ଼ ତାଠାରୁ ଜୀବନ ନୋହେ,
ବଳ ତାହାଠାରେ ସିନା ସହେ,
ବହିରଙ୍ଗେ ବୁଲୁଛନ୍ତି ଦେଖ ଅଗଣା ରେ । ୩ ।
ବୋଲେ ଅଷ୍ଟଦୁର୍ଗର ମାଧବା, ବଳ୍ଲୀନିକଟକୁ ଚାଲ ଯିବା,
ବଂଶୀଗୀତ ପୀୟୂଷ ପିଇବା,
ବିଭବଶ ନ ପାଉଁ ଆସିବା ଅଜଣାରେ । ୪ ।

(ବ) କୌତୁକାଲ୍ପୀତମୀକ୍ଷଦତ୍ତଥ୍ୟଂ କୌ ତୁ କା ହୃଦ୍ବିଦଧାତ୍ତ ବୟସ୍ୟା,
ପିଷ୍ଟପେ ମମ ଯଥା ଭ୍ରମଦେହ୍ୟା, ପିଷ୍ଟପେକ୍ଷଣଭୟାନ୍ନ ବଦାମି ।

ରସିକାଂ ପ୍ରାଣାଧିକାଂ ତ୍ୱା ବିନାନ୍ୟ ନାଗର୍ଯ୍ୟାଂ ମଦୁକ୍ତନୈଷ୍ଠୁର୍ଯ୍ୟନଦାନପର୍ଯ୍ୟାଲୋଚନଚାତୁର୍ଯ୍ୟଧୂର୍ଯ୍ୟା କା ବାନ୍ୟାସ୍ତୀତି ଧୈର୍ଯ୍ୟମବଲମ୍ବ୍ୟ ଯଦୁକ୍ତମନୁଶତଂ ତଦ୍ୱସ୍ତ୍ୱ୍ୟାଗଚ୍ଛାବାଂ ଗତ୍ୱା କୁଞ୍ଜସନ୍ନିଧୌ ଯୌବତଜୀବନାନ୍ତର୍ଯାତନାଯତମାନକଣ୍ଠ କ୍ଷମାଲସ୍ୟାପି ତସ୍ୟାଖଣ୍ଡଶିଖଣ୍ଡମଣ୍ଡିତଶେଖରସ୍ୟ ଭ୍ରମଣରମଣୀୟାୟା ଭୁବଃ ସୁଷମାମବଲୋକୟିଷ୍ୟାବ ଇତି ବିଡ଼ମ୍ବିତସୂନକଲମ୍ବବଜସୂତଣ୍ଡିମାଡ଼ମ୍ବରବଲମ୍ବିଚରଣମଣ୍ଡନଂ ନିଃସୃତ୍ୟ କଦମ୍ବକୁଞ୍ଜକାନନାନ୍ତର୍ବିବଶତୁଃ ।

---

ଯୁଗଳକୁ ଚରଣରୁ ବାହାର କରି କଦମ୍ବକୁଞ୍ଜକାନନ ମଧ୍ୟକୁ ଲଳିତାଙ୍କ ସଙ୍ଗେ ପ୍ରବେଶ କଲେ ।

ଲଳିତା ଲତା ଆଡ଼ୁଆଳରେ ରହି ଶ୍ରୀକୃଷ୍ଣଙ୍କର ଶୋଭା ରାଧିକାକୁ ଦେଖାଇ କହୁଅଛନ୍ତି,—"ଭଙ୍ଗୀ ଗୁହିଁ" ଇତ୍ୟାଦି ।

---



ରାଗ—କେଦାରଗୌଡ଼ା

ଭଙ୍ଗୀ ଗୃହାଁ, ଭ୍ରୂରୂମାଳଭୁଜଙ୍ଗୀ-ଭ୍ରମର,' ଜୀବସଙ୍ଗି । ପଦ ।

ଭାଗ୍ୟ ଏ ଜନଆଖି, ଜନନରହି ସଖି, ଜାଣ ରେ,
ଭରମି ନ ଯା ତୁ ମନ୍ମଥ-ବାଣରେ,
ଭୁଜପାଶିକୁ ଛନ୍ଦ ମୋ ଗଳେ, ଭଡ଼େ ପଦକଞ୍ଜ ଖଞ୍ଜ ଧରଣୀ ତଳେ,
ଭୂମଣ୍ଡନା ରେ,
ଭଲ ମାନୁଛୁ ଦେଖ    ମୁଖସୁଧାମୟୂଖ,
ଅଳକତଳ ଅଖ-    ଣ୍ଡିତ ରୋଚନାରେଖ,
ତିଳକେ ଦୃଷ୍ଟି ରଖ, ସଖି ରେ, କି ବଶେ ଚଳାଚଳ, ଚନ୍ଦ୍ରକଚୂଳ । ୧ ।
ଭର୍ତ୍ସିତନବରବ, କୁଣ୍ଡଳଯୁଗଛବି, ଗଣ୍ଡରେ,
ଭଦୁର ଏହ୍ନି ବଦେକମୁଣ୍ଡରେ,
ଭବ୍ୟଦାୟକ ମାଣିକ୍ୟବର    ଭ୍ରମ ଜାତ କରୁଅଛୁ ମଧୁରୁଧର,
ଭୂମଣ୍ଡନା ରେ,
ଭୂଷଡ଼ିବଟି ସଖି-    ବ୍ରତ ନୟମ ଧୃତି,
ଶ୍ରୀଅଙ୍ଗସଙ୍ଗ ମତି    ବିନା ଅନାଥ ଦ୍ୟୁତି,
ମଦଦ୍ୱିରଦଗତି, ସଖି ରେ, ଶୋଭାନିଧି ତୋ ଗାତ୍ର, ନ ଚୁମ୍ବୁ ଶ୍ୟାମନେତ୍ର ॥

---

(ଭ) ଭ୍ରୂରୂମାଳଭୁଜଙ୍ଗୀ—ଭ୍ରୂଲତାରୂପ ମାଳସର୍ପୀ; ଭ୍ରମର—ଭ୍ରମଣର ବା ଚଳନର; ଜୀବସଙ୍ଗି—ହେ ପ୍ରାଣବନ୍ଧୁ; ମନ୍ମଥ—କନ୍ଦର୍ପ; ଜନନ—ଜନ୍ମ; ଭୁଜପାଶି—ବାହୁରୂପ ଫାଶ; ଭଡ଼େ—ଦୃଢ଼ରୂପେ; ପଦକଞ୍ଜ—ପାଦରୂପ ପଦ୍ମ; ଖଞ୍ଜ—ସ୍ଥାପନ କର; ସୁଧାମୟୂଖ—ଚନ୍ଦ୍ର; ଅଳକତଳ—ଚୂର୍ଣ୍ଣକୁନ୍ତଳର ନିମ୍ନଦେଶ; ଅଖଣ୍ଡ ରୋଚନାରେଖ—ଆଦୌ ଖଣ୍ଡିଆ ହୋଇ ନ ଥିବା ଗୋରଚନାର ରେଖା ବା ଗାର; ଚଳାଚଳ—ଗତିଶୀଳ; ଚନ୍ଦ୍ରକଚୂଳ—ମୟୂରପୁଚ୍ଛନିର୍ମିତ ମୁକୁଟ; ଭର୍ତ୍ସିତନବରବ—ତିରସ୍କୃତ ବା ପରାଜିତ ହୋଇଅଛି ନବୋଦିତ ସୂର୍ଯ୍ୟ ଯାହାଦ୍ୱାରା (କୁଣ୍ଡଳଯୁଗର ବିଶେଷଣ)। ଭଦୁର—ବକ୍ର; ଭବ୍ୟଦାୟକ—ସୁଖପ୍ରଦ; ଧୃତି—ଧୈର୍ଯ୍ୟ; ଦ୍ୟୁତି—ଶୋଭା; ମଦଦ୍ୱିରଦଗତି—ମତ୍ତଗଜଗମନା; ଶୋଭାନିଧି—ସୌନ୍ଦର୍ଯ୍ୟର ସଂପଦ; ଭଙ୍ଗୀଗୃହରେ—ତ୍ରିଭଙ୍ଗିରେ; ଭରାଜି—ନକ୍ଷତ୍ରସମୂହ; ଭର୍ଗସମାଧି—ଶିବଙ୍କର ଯୋଗଜନିତ ସ୍ଥିରତା; ଭଲେ—ଅକ୍ଳେଶରେ, ଭୂତଭୂଷବିପକ୍ଷ—ମହାଦେବଙ୍କ ଶତ୍ରୁ, କନ୍ଦର୍ପ; ପ୍ରକ୍ଷ୍ୱେଡ଼ନ—ଶର;

ଭଙ୍ଗୀବସ୍ତୁରେ ଉଭା ହେବାର କେଡ଼େ ଶୋଭା ପ୍ରକାଶେ
ଭଙ୍ଗ କି ହାର ସେ ବକ୍ଷ ଆକାଶେ,
ଭର୍ଗସମାଧି ଭଙ୍ଗ କରିବ ଭଲେ ଏହା କରକମଳ ବଂଶୀରବ
ଭୂମଣ୍ଡନା ରେ
ଭୂତଭୂଷ-ବିପକ୍ଷ— ପ୍ରକ୍ଷ୍ୱେଡନରୁ ଦକ୍ଷ,
ଏ କିଶୋର କଟାକ୍ଷ କନକାଚଳ ବକ୍ଷ,
କେବଳ ଏହା ଲକ୍ଷ୍ୟ, ସଖି ରେ, କହ ବିଗୁର ସତେ, ଯୁବତିଧୃତି କେତେ ॥
ଘଷିଲେ ଅଷ୍ଟ ଦୁର୍ଗ-କ୍ଷିତି କପଟସ୍ୱର୍ଗ ମଘବା,
ଏ ଶୃଙ୍ଗାର ସୁଧାବରଷୀ ମେଘ ବା,
ଭୃତ୍ୟପଣରେ ହେଲେ ଏହାର ଭୁଜଭୁଜଗେନ୍ଦ୍ର କରନ୍ତା କଣ୍ଠେ ହାର,
ଭୂମଣ୍ଡନା ରେ,
ଭଜିଥାନ୍ତା ରଜନୀ, ଦିବସେ ପିକଦାମୀ,
ଖଟି ଏ କୃପା ଘେନ ସାର୍ଥ ହୁଅନ୍ତା ଜନ,
ସତେ ଜଳଜଯୋନି ସଖି ରେ, କରିବେ ଅନୁଗ୍ରହ ଏ ମୋହନ ବିଗ୍ରହ ।୯।

(ଞ) କୁଳାବଳାଧୈର୍ଯ୍ୟବ୍ୟୟୀକରଣଧୂର୍ଯ୍ୟଶ୍ରୀ ତଳତୋ
ଦଧନ୍ନୀପାଭ୍ୟାସେ ଭୁବନନୟନାସେଚନକତାଂ ।
ହରିଃ ସୋଽୟଂ କାଳାମ୍ବୁଦନିଭତମାଳ, ଶମରୁଚିଃ,
କୃତସ୍ଥୈର୍ଯ୍ୟନ୍ୟାସଂ ଗତନିମିଷୟା ସଂପିବ ଦୃଶା ॥

ଇତି ବିଜ୍ଞାପ୍ୟ ରାଧାଙ୍ଗସୌରଭଲବ୍ଧାରବ୍ଧାନଙ୍ଗମଙ୍ଗଳସଙ୍ଗୀତ ମଧୁକରନିକରବିଜାଣିପୂବିଳାସପୂର୍ତ୍ତିନକୁଞ୍ଜପୁଞ୍ଜ ଆତ୍ମାନଂ ହରେର୍ଲୋଚନ-ଗୋଚରୀକୃତ୍ୟ କୁସୁମନିଚୟାବଚୟସମୁଦ୍ୟମାଭିନୟେନ ତତୋ ଲତାନ୍ତରଂ ପ୍ରତି ଚଳିତାୟାଂ ଲଳିତାୟାଂ—

---

ଦକ୍ଷ—ତୀକ୍ଷ୍ଣ; କନକାଚଳବକ୍ଷ—ସ୍ୱର୍ଣ୍ଣପର୍ବତ ପରି ହୋଇଥିବା କୁଚଯୁକ୍ତ ବକ୍ଷଦେଶ; କ୍ଷିତି—ରାଜ୍ୟ, କପଟସ୍ୱର୍ଗ—ସ୍ୱର୍ଗସଦୃଶ, ମଘବା—ଇନ୍ଦ୍ର (ରାଜା ଅର୍ଥରେ); ଶୃଙ୍ଗାର ସୁଧା—ପ୍ରୀତି ରୂପକ ଅମୃତ; ଭୁଜଭୁଜଗେନ୍ଦ୍ର—ବାହୁରୂପ ଶ୍ରେଷ୍ଠ ନାଗ; ଘେନ—ପାଇଁ; ଜନ—ଜନ୍ମ; ଜଳଜଯୋନି—ବ୍ରହ୍ମା, ବିଧାତା ।

ଅନୁବାଦ—(ଞ) ଯେ ମନ୍ଦହାସରେ ଗୋପକୁଳବଳାମାନଙ୍କର ଧୈର୍ଯ୍ୟ ଲୋପ-କରି ପାରନ୍ତି, ସେହି ଘନନୀଳକାନ୍ତି ତମାଳଶ୍ୟାମ ଶ୍ରୀହରି କେଳିକଦମ୍ବ ମୂଳରେ

# ମ

ରାଗ—କାମୋଦୀ ବା ମରୁଆ

ମଧୁରେ, ମନ୍ଦ ମନ୍ଦ ହୋଇ ଗନ୍ଧବହ ପ୍ରସରିଲା କଦମ୍ବ ନିକୁଞ୍ଜସୀମାରେ,
ମରନ୍ଦ ସେଚକେ ଚମକ ଲୋକେ ଭ୍ରସିଲେ ଇଷେ ମାରେ,
ମିଳିନ୍ଦ ଲତାଦମ୍ଭବନିତା ବଦନେ ମିଶି ମାରେ,
ମଣ୍ଡିତ ହେଲା ସେ ବନସ୍ଥଳ,      ମହାରଜତ ମହେନ୍ଦ୍ର ନୀଳ-
ମୟୂଖ ଶିଖମୟ ମଞ୍ଜରୀ ବସର ସୁଷମାରେ । ପଦ ।
ମିଶିଲା ରାଧାର ଲୋଚନ ବାରି-      ରୁହ ମଦନୁ ଲଭି ଲାଗୁରି
ମିଳିଲା ଶ୍ୟାମ ଗଜର ଦୁଇ ମହ,
ମଧୁପ ଯୁବା ଲଭିଲା ଅବା ନବ ସରସୀରୁହ;
ମାନସ ଅଙ୍ଗଭେଦ ପ୍ରସଙ୍ଗ ଭଙ୍ଗ ରଚିଲା ସ୍ନେହ,
ମଉଳିଗଲା ଶେଷ ସାତ୍ତ୍ୱିକ      ମୃଡ଼ନୟନ ସଂଖ୍ୟକଯାଙ୍କ
ମହାଇ ଦେଲା ଦୁହିଙ୍କ ମନ ମହାମୋଦପ୍ରବାହ । ୧ ।

---

ବିଶ୍ୱଜନନୟନମୋହନ ରୂପ ଧାରଣ କରି ଅବସ୍ଥାନ କରୁଅଛନ୍ତି । ହେ ସଖି, ଦୃଢ଼ରୂପେ ଧୈର୍ଯ୍ୟ ଧାରଣ କରି ନିମେଷଶୂନ୍ୟ ଦୃଷ୍ଟିରେ ସେହି ରୂପକୁ ପାନ କର ।

ଲଳିତା ଏହା କହି ପୁଷ୍ପଚୟନ ବ୍ୟାଜରେ ଶ୍ରୀକୃଷ୍ଣଙ୍କୁ ଦେଖାଦେଇ ଅନ୍ୟ ଲତା ଆଡ଼କୁ ଚାଲିଗଲେ । ରାଧା ଯେଉଁ କୁଞ୍ଜରେ ଥିଲେ, ସେହି କୁଞ୍ଜରେ ତାଙ୍କର ଅଙ୍ଗ-ସୌରଭରେ ଆକୃଷ୍ଟ ହୋଇ ଭ୍ରମରମାନେ ବିବିଧ କଳାସମ୍ପୂର୍ଣ୍ଣ କାମୋଦ୍ଦୀପକ ମଙ୍ଗଳ ସଙ୍ଗୀତ ଆରମ୍ଭ କରିଦେଲେ । ଏହି ସମୟରେ "ମଧୁରେ, ମନ୍ଦ ମନ୍ଦ ହୋଇ ଗନ୍ଧବହ ପ୍ରସରିଲା" ବୋଲି କବି ବର୍ଣ୍ଣନା କରୁଛନ୍ତି ।

—*—

(ମ) ମଧୁରେ—ବସନ୍ତରେ, ମନ୍ଦ ମନ୍ଦ ହୋଇ—ଧୀରେ ଧୀରେ; ଗନ୍ଧବହ—ମଳୟପବନ, ମରନ୍ଦସେଚକେ—ମକରନ୍ଦ ବା ପୁଷ୍ପମଧୁ ପକାଇବାରୁ, ଇଷେ—କାମୋଦ୍ଦୀପକ ଇଷ୍ ଇଷ୍ ଶବ୍ଦ; ମାରେ—ମାର ଅର୍ଥାତ୍ କାମର ଉଦ୍ଦୀପନାରୁ, ମିଳିନ୍ଦ—ଭ୍ରମର, ଲତାଦମ୍ଭବନିତା—ଲତାମାନେ ବ୍ୟାଜ ବନିତା ସ୍ଥାନୀୟ, ଲତାରୂପିଣୀ ସ୍ତ୍ରୀମାନେ; ବଦନେ—ମୁଖରେ, ମହାରଜତ—ସୁବର୍ଣ୍ଣ, ମହେନ୍ଦ୍ରନୀଳ—ଇନ୍ଦ୍ରନୀଳମଣି, ମୟୂଖଶ୍ରୀମୟ—କିରଣଶୋଭାପୂର୍ଣ୍ଣ, ମଞ୍ଜରୀ—କଢ଼ି, ବସର—ବିସ୍ତାର, ସଞ୍ଚାର; ସୁଷମା—ପରମ ଶୋଭା, ଲୋଚନବାରିରୁହ—ଚକ୍ଷୁ ରୂପ ପଦ୍ମ, ମଦନୁ—କାମୋଦ୍ଦୀପନା ହେତୁରୁ; ଲାଗୁରି—(ଗ୍ରାମ୍ୟ ଶବ୍ଦ) ପରସ୍ପର ମିଶ୍ରଣ ବା ଏକୀଭାବ, ମହ—ତେଜ, ମଧୁପଯୁବା—ତରୁଣ ଭ୍ରମର,

ମଦଦ୍ୱିରଦ-ମଥିତହ୍ରଦ, ମୂର୍ଚ୍ଛିତ ମହୋତ୍ପଳ ଆମୋଦ,
ଫୁଲ୍ଲପରାଗ ଶ୍ରୀଅଙ୍ଗରାଗ ବାସ,
ମୃଗଲାଞ୍ଛନ ମରୀଚି ଚୂର୍ଣ୍ଣ ଧାବଲ୍ୟ ପରକାଶ;
ମଧୁମାଧବ ଗୁଣସୂଚକ କୋକିଳ କଳଘୋଷ,
ମଣିମଣ୍ଡିତ କଙ୍କିଣୀଯୁତ ମଞ୍ଜୁ ମଞ୍ଜୀର ଭୂଷା ଶିଞ୍ଜିତ
ରସନା ରଣତ୍କାର ଶ୍ରବଣ କଲା ବିବେକ ମୋଷ । ୨ ।

ମଧୁ ମଧୁର ବଧୂ ଅଧର କିଶୋରବର ରଦନାମ୍ବର,
ବିମ୍ବ ଚୁମ୍ବନ ଚୁଁ କୃତି ସ୍ୱନମେଳା,
ମୃଦୁ ମନ୍ମନ ଧ୍ୱନି ଜନନ କଲାଟି କ୍ରୋଡ଼ଖେଳା,
ମହେନ୍ଦ୍ର ମଣି, ବଳୟ ଶ୍ରେଣୀ ରହିଲା ହୋଇ ଲୋଳା,
ମନୋଜ୍ଞ ଗୃହୀପୀୟୂଷମୟ, ମିଶ୍ରିତ ହେଉ ହେଉ ସମୟ
ମାର ମହତ୍ତ୍ୱ ଗଲା କି ନାହିଁ ହେଲା ସଂଶୟଦୋଳା । ୩ ।

ମନ୍ଦାର ବନ ସେ ବନ ରସା-ତଳେ ରଚିଲା ସୂନ ବରଷା,
ରସିଲେ ସର୍ବ ଗନ୍ଧର୍ବମାନେ ଗାନେ;
ମାତି ତାଣ୍ଡବ ରଚିଲେ ଦେବଦାସୀଏ ସାବଧାନେ,
ମର୍ଦ୍ଦଳ ଘୋଷ ହେଲା ତ୍ରିଦଶ ମଣ୍ଡଳେ ସବୁସ୍ଥାନେ,
ମୁକତି ପ୍ରାପ୍ତ ହେଲା ତ୍ରିଲୋକ—ମାନସୁ ମ୍ଳାନ କଲେ ପାତକ
ଶ୍ରୀ ଜଗଦ୍ଦେବ ହରିଚନ୍ଦନ ସେ ମହୋତ୍ସବ ଧ୍ୟାନେ । ୪ ।

---

ସରସୀରୁହ—ପଦ୍ମ, ମାନସ ଅଙ୍ଗଭେଦ—ମନ ଓ ଦେହର ପ୍ରଭେଦ; ସାତ୍ତ୍ୱିକ—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, କମ୍ପନ, ବିବର୍ଣ୍ଣତା, ଅଶ୍ରୁ ଓ ମୂର୍ଚ୍ଛା ଏହି ଆଠ ପ୍ରକାର ବିକାର, ମୃଡ଼—ମହାଦେବ, ମୃଡ଼ନୟନ ସଂଖ୍ୟକଯାନ—ତିନିଗୋଟି, ମହାମୋଦ—ବିଶେଷ ଆନନ୍ଦ, ମଦଦ୍ୱିରଦମଥିତ—ମତ୍ତହାତୀଦ୍ୱାରା ଘଣ୍ଟା ହୋଇଥିବା, ମୂର୍ଚ୍ଛିତ—ବର୍ଦ୍ଧିତ, ବିସ୍ତାରିତ; ଫୁଲ୍ଲ—ଫୁଟନ୍ତା; ଶ୍ରୀଅଙ୍ଗରାଗବାସ—ଶ୍ରୀଅଙ୍ଗସୌରଭ, ମୃଗଲାଞ୍ଛନ-ମରୀଚି—ଚନ୍ଦ୍ରଙ୍କର କିରଣ, ଚୂର୍ଣ୍ଣଧାବଲ୍ୟ—ଚୂନପରି ଧବଳତା, କଳଘୋଷ—କୁହୁଧ୍ୱନି, ମଞ୍ଜୀର—ନୂପୁର, ଶିଞ୍ଜିତ—ରୁଣୁ ରୁଣୁ ଧ୍ୱନି (ଅଳଙ୍କାର ଶବ୍ଦ), ରସନା—ଅଣ୍ଟାସୂତା ବା ଚନ୍ଦ୍ରହାର, ରଣତ୍କାର—ରଣରଣ ଧ୍ୱନି, ମୋଷ—ଚୋର, ଲୋପ; ମଧୁ—ମହୁ, ରଦନାମ୍ବର—ଓଷ୍ଠ, ଚୁଁ କୃତି—ଚୁ ଚୁଁ ଶବ୍ଦ, ମନ୍ମନଧ୍ୱନି—ମନୋହର ଅସ୍ପଷ୍ଟ ଗଦ୍ଗଦ ଶବ୍ଦ ବା ଅବ୍ୟକ୍ତ ମଧୁର ଧ୍ୱନି, ମହେନ୍ଦ୍ରମଣି—ଇନ୍ଦ୍ରନୀଳମଣି; ବଳୟ—ବାଲା; ଲୋଳା—ଚଞ୍ଚଳ; ମନ୍ଦାରବନ—ନନ୍ଦନ କାନନ; ରସାତଳେ—ଭୂମଣ୍ଡଳରେ,

(ମ) ପ୍ରାପଞ୍ଚିକାନ୍ଧତମସାନ୍ଧୁପ୍ରଚଣ୍ଡପାତାତ୍
ପ୍ରାୟଃ ସମାକୁଳବିବେକଦୃଶାଂ ଜନାନାଂ ।
ଚାମୀକରପ୍ରକରପୀତମୟୂଖଲେଖା,
ନୀଳୋତ୍ପଲାଂଶୁମୟମସ୍ତୁ ବନାୟ ତେଜଃ ।

ଶିଶୁପଭ୍ରକ୍ଷିପ୍ତାଂ ମାଳାମିବ ଶାଣୋଲ୍ଲୀଢ଼ାଂ ମଣିମିବ, ତମସାଗ୍ରସ୍ତଗଳିତାଂ ଚନ୍ଦ୍ରିକାମିବ, ଗଜେନ୍ଦ୍ରଦଳିତୋତ୍କର୍ଷିତାଂ ସରୋଜିନୀମିବ, ମୃଗେନ୍ଦ୍ରଗୃହୀତମୁକ୍ତାଂ ମୃଗୀମିବାନଙ୍ଗସଙ୍ଗରରଙ୍ଗମଙ୍ଗଳମହୋତ୍ସବାନ୍ତଶୟ୍ୟାୟୁସ୍ତାଂ ଭୂୟସ୍ତାମଙ୍କମାରୋପ୍ୟ କୃଷ୍ଣଃ ।

---

ସୁନବର୍ଷା—ପୁଷ୍ପବୃଷ୍ଟି; ମାତ—ପ୍ରେମୋନ୍ମତ୍ତ ହୋଇ, ଦେବଦାସୀଏ—ଅପ୍ସରାମାନେ, ମଙ୍ଗଳଘୋଷ—ମୃଦଙ୍ଗ ଶବ୍ଦ, ତ୍ରିଦଶମଣ୍ଡଳେ—ସ୍ୱର୍ଗରାଜ୍ୟରେ, ପାତକ—ପାପତାପ ।

ଅନୁବାଦ—(ମ) ଶ୍ରୀରାଧାଙ୍କ ସ୍ୱର୍ଣ୍ଣାଭ କିରଣମାଳା ଓ ଶ୍ରୀକୃଷ୍ଣଙ୍କ ଶରୀରର ନୀଳୋତ୍ପଳମୟ ତେଜଃ ପୁଞ୍ଜ, ସଂସାରର ଘୋରମୋହାନ୍ଧକାରଦ୍ୱାରା ଯେଉଁମାନଙ୍କର ବିବେକଦୃଷ୍ଟି ସମାବୃତ ହୋଇଅଛି, ସେହି ସଂସାରୀମାନଙ୍କୁ ମୋହରୂପ କୂପଗର୍ଭରେ ପଡ଼ିବା ରୂପ ଦୁର୍ଦ୍ଦଶାରୁ ରକ୍ଷା କରୁ; ଅର୍ଥାତ୍ ରାଧା ଓ କୃଷ୍ଣଙ୍କ ତେଜୋଦ୍ୱୟ ମୋହାନ୍ଧ ସଂସାରୀମାନଙ୍କୁ ମୋହକୂପରୁ ରକ୍ଷା କରୁ ।

ପିଲ ପିନ୍ଧି ସାରି ଫୋପାଡ଼ି ଦେଇଥିବା ଫୁଲମାଳ ପରି, ଶାଣରେ ଘଷା ଯାଇଥିବା ମଣି ପରି, ରାହୁଗ୍ରାସରୁ ମୁକ୍ତ ଚନ୍ଦ୍ରିକା ପରି, ମତ୍ତହସ୍ତୀ ଦଳିକରି ଛାଡ଼ି ଯାଇଥିବା ପଦ୍ମନାଡ଼ ପରି, ସିଂହ ଧରି ଛାଡ଼ି ଦେଇଥିବା ହରିଣୀ ପରି, କାମକ୍ରୀଡ଼ାରଙ୍ଗରେ ଆୟାସପ୍ରାପ୍ତା ରାଧାଙ୍କୁ ଶ୍ରୀକୃଷ୍ଣ କୋଳରେ ବସାଇ କହୁଅଛନ୍ତି—"ଯୋଷାବର ରେ" ଇତ୍ୟାଦି ।

—*—

(ଯ) ଯୋଷାବର—ନାରୀରତ୍ନ, ଯଥାର୍ଥ—ପ୍ରକୃତ, ଯାମଳଭୂଧରନିଭପୟୋଧର—ଯାଆଁଳା ବା ଯୋଡ଼ା ପର୍ବତ ପରି ସ୍ତନ, ମରଦନିଆ—ମର୍ଦ୍ଦନକାରୀ, ଯାବକ—ଅଳତା, ପଦକଞ୍ଜର—ପାଦପଦ୍ମର, ସମଦଗଜଗତି—ମତ୍ତଗଜଗମନା, ଶେଖର—ଶିରୋଭୂଷଣ, ଯତୀନ୍ଦ୍ରସମାଧିଖଣ୍ଡନା—ହେ ମହାଯୋଗୀଙ୍କର ଯୋଗଭଙ୍ଗକାରିଣୀ, ନିଧି—ସମ୍ପଦ; ରଙ୍କମାନଙ୍କ ବର—ଅତିଦରିଦ୍ର; ଯମକ—ପୁନରାବୃତ୍ତି, ସୁଆଦରେ—ଅତି ଆଦରରେ, ଯୁବତୀକଦମ୍ବରାଜା—ଯୁବତୀସମୂହଶ୍ରେଷ୍ଠ, ଅବଲମ୍ବ—ଆଶ୍ରୟ, ନିକର—ନିଶ୍ଚୟ, ସନ୍ନଦ୍ଧ ହେଉ—ସାଜି ପିନ୍ଧୁ, ପଞ୍ଚଶର—କନ୍ଦର୍ପ; ବାହିନୀ—ନଦୀ; ତଟରୁହବନୀ—ତଟରେ ଥିବା ବଣ; ଅବନୀ—ଲୀଳାସ୍ଥଳୀ; ପଟଳୀ—ସମୂହ; ନିବାର—ନିବାରଣ, ଗିରେ—କଥାରେ, ପୁରନ୍ଦର—ରାଜା ।

# ଯ

## ରାଗ—ମୁଖାବରୀ

ଯୋଷାବର ରେ, ଯଥାର୍ଥରେ ଜାଣ ମୁଁ ତୋହର ରେ,
ଯାମଳଭୂଧରନିଭପୟୋଧର ମରଦନିଆ ଗୃହକର ରେ । ପଦ ।
ଯାବକ ତୋ ପଦକଞ୍ଜର ଯମଦଗଜଗଣ୍ଡ ମୋ ଶେଖର ରେ,
ଯଶୀନ୍ଦ୍ର ସମାଧିଖଣ୍ଡନା ତୁ ନଥି ମୁଁ ରଙ୍କମାନଙ୍କ ବର ରେ । ୧ ।
ଯମକ କି ତୁହି ପୂର୍ଣ୍ଣଚନ୍ଦ୍ରମୁହିଁ ମୋ ମହାଶୁଭଦଶାର ରେ,
ଯତ୍ନେ ସମ୍ପାଦିବା ଚିନ୍ତାମଣି ଅବା ମୋ କରେ ଦେଲୁ ସୁସାରରେ । ୨ ।
ଯୁବତୀକଦମ୍ବରଜା ଅବଲମ୍ବ ହୋଇଲୁ ଯେବେ ନକର ରେ,
ଯୁଦ୍ଧକୁ ସନ୍ନଦ୍ଧ ହେଉ ଅତି ବୃଦ୍ଧ ହୋଇ ପଛେ ପଞ୍ଚଶର ରେ । ୩ ।
ଯମୁନାବାହିନୀ ତଟରୁହବନୀ ଅବନୀ ବନାଇବାର ରେ,
ଯଶ ରଖି ନନ୍ଦାପଟଳୀରୁ ବୃନ୍ଦା କଢାଇଲା ତ ନବାର ରେ । ୪ ।
ଯଶୋଦାକୁମର ଗିରେ ରାଧା ଶିର ନୁଆଁଇଲେ ଲଜ୍ଜାଭର ରେ;
ଯୁଗଳ ବିଗ୍ରହ କର ଅନୁଗ୍ରହ ଅଷ୍ଟଦୁର୍ଗ-ପୁରନ୍ଦର ରେ । ୫ ।

(ଯ) ଅଦ୍ୟପ୍ରଭୃତ୍ୟନଳସେନ୍ଦୁ ସହୋଦରାସ୍ୟେ,
ଦାସ୍ୟେ ତବାସ୍ମ୍ୟହମହର୍ନିଶମେବ ଯୁକ୍ତଃ ।
ଆଗୋ ଲତା ନ ଗଣୟତ୍ୟଳିଶଂ ଯଥାଳେ-
ର୍ବାଳେ ସମ ତ୍ୱମପି ତତ୍ସତତଂ କ୍ଷମସ୍ୱ ॥

ଇତ୍ଥଂ ପ୍ରତ୍ୟଙ୍ଗଚୁମ୍ବାଲିପ୍ତଚର୍ଚ୍ଚୋଚ୍ଚରତ୍‌ଚୁମୁତ୍କାରଚମତ୍କାରଶୈଃ ସତଟ୍ଟଳଚ୍ଚଟ୍ଟକ୍ରିପଟିମା ଚାଟୋପପୁଷ୍ଟିତୈମ୍ପୁର୍ଦୁତ୍ୱଙ୍କଟନୈଶ୍ଚେଲାଞ୍ଚଳବ୍ୟଜନ-ବୀଜନୈଃସ୍ଥାସନ୍ଧ୍ୟାବସାନାୟାଂ କ୍ଷଣଦାୟାଂ ମଞ୍ଜୁଳକେଳିମଞ୍ଜୁଷାନଳୟଦ୍ୱାର ନିଲୟୁ କାଚିତ୍ ବ୍ରଜଦେବୀ ।

---

ଅନୁବାଦ—(ଯ) ହେ ପୂର୍ଣ୍ଣଚନ୍ଦ୍ରମୁଖି, ଆଜଠାରୁ ଦିନରାତି ସର୍ବଦା ତୋ ଗୃହକର ବୋଲି ମୋତେ ଜାଣିବୁ । ଲତା ଯେପରି ଭ୍ରମରର ଚୁମ୍ବନାଦିଜନିତ ମହାଅପରାଧକୁ ଧରେ ନାହିଁ, ହେ ସୁନ୍ଦରି, ତୁ ସେପରି ମୋର ସମସ୍ତ ଅପରାଧକୁ ସର୍ବଦା କ୍ଷମା କରିବୁ ।

ଶ୍ରୀକୃଷ୍ଣ ଶ୍ରୀରାଧାଙ୍କର ପ୍ରତ୍ୟଙ୍ଗକୁ ଚୁମ୍ବନ କଲାବେଳେ ଉଠିବା ଚୁଁକାର ଶବ୍ଦରେ ଅନିର୍ବଚନୀୟ ଆନନ୍ଦ ଜାତ ହେଲା, ଏହିପରି ମନୋହର ଚାଟୁକୁଆପୂର୍ଣ୍ଣ ସୁମଧୁର ବାକ୍ୟ

# ର

## ରାଗ—କେଦାର

ରସାଳସା ରେ, ରସି ପୁଣି ଏ କି ଲୋକହସା ରେ । ପଦ ।
ରକ୍ତିମା ଚୁମ୍ବିଲ ଇନ୍ଦ୍ରଅଶାରେ, ରାଜୀବେ ପ୍ରଫୁଲ୍ଲ ହେଲେ କାସାରେ । ୧ ।
ରତିନାଥ ସମର ପ୍ରଶଂସାରେ, ରମଣୀ କେ ନ ରସନ୍ତି ସେସ ରେ । ୨ ।
ରସନ୍ତ ରସିକେ ସିନା ନଶାରେ, ରଜନୀ ଶେଷରେ ଏ କି ଦଶା ରେ । ୩ ।
ରମଣୀୟ ହେମଙ୍କୁ ସୁଦୃଶା ରେ, ରଖିଲୁ କେତେ ନବତେ ମସାରେ । ୪ ।
ରହୁ ନା ଅଯଶ ଆଜ ରସାରେ, ରସାରୁହରୁ ଲତାକୁ ଖସା ରେ । ୫ ।
ରାଜାଅଷ୍ଟଦୁର୍ଗର ଏ ଭାଷା ରେ, ରଚେ ଏବେ ବଳେ ହେଉ ସୁସାରେ । ୬ ।

(ର) ଅନାଦୃତ୍ୟାଳୀନାଂ ପ୍ରିୟବଚନମାଳାମକଠିନାଂ,
ହଠାତ୍ ପ୍ରେୟଃଶ୍ରଦ୍ଧାର୍ଗଳନିବଡ଼ରୁଦ୍ଧାସି ସଖି ଚେତ୍ ।
ଇଦାନୀମପ୍ୟାମ୍ରାବନମବନଭୂଷାର୍ଣ୍ଣ ସୁଷମେ,
ଯଥା ଭୂୟାଦ୍ ଯତ୍ନାନ୍ କୁରୁ କୁଶସପତ୍ନାସ୍ୟହସିତଂ ॥

ତତସ୍ତଦାକର୍ଣ୍ଣ୍ୟ କର୍ଣ୍ଣାଭ୍ୟର୍ଣ୍ଣଚୁମ୍ବି ତୃଷ୍ଣାକ୍ରୀଡ଼ଲ୍ଲୋଳଲୋଚନାଂ ଦାତ୍ଘୋତ୍ତୀର୍ଣ୍ଣସ୍ୱର୍ଣ୍ଣସାବର୍ଣ୍ଣ୍ୟପୂର୍ଣ୍ଣବର୍ଣ୍ଣା ଶୀର୍ଣ୍ଣନଧୂବନୋତ୍ସାହାନ୍ତରେକା ସା ପ୍ରକୀର୍ଣ୍ଣ-ମାଲ୍ୟମୁତ୍ଥାୟ ସଖୀଯନ୍ତମ୍ କଶୋରେଶ୍ୱରଂ ପ୍ରତି ।

---

କହୁଁ କହୁଁ ଏବଂ କାନ୍ତ ପର୍ଯ୍ୟଙ୍କରେ ବସି ହେଉ ହେଉ ରାତ ପାହିଗଲା । ଏହି ସମୟରେ ଜଣେ ବ୍ରଜାଙ୍ଗନା ଯେହି ମନୋହର କେଳିମଣ୍ଡପକୁଞ୍ଜର ଦ୍ୱାରଦେଶରେ ଆଗେଇ ହୋଇ ରହି ଶ୍ରୀରାଧାଙ୍କୁ ସମ୍ବୋଧନ କରି କହିଲେ—"ରସାଳସା ରେ" ଇତ୍ୟାଦି ।

—※—

(ର) ହେ ରସାଳସା—ରସାଧିକ୍ୟ ଯୋଗୁଁ ଆଳସ୍ୟପ୍ରାପ୍ତା; ଇନ୍ଦ୍ରଆଶା—ପୂର୍ବଦିଗ, ରାଜୀବେ—ପଦ୍ମମାନେ; କାସାରେ—ପୋଖରୀରେ; ରତିନାଥସମର—କନ୍ଦର୍ପ ସମର ବା କାମକ୍ରୀଡ଼ା; ନଶାରେ—ରାତିରେ; ହେମକୁ—ସୁନା ଭଳି ଦେହକୁ; ସୁଦୃଶା—ସୁନେତ୍ରା; ମସାରେ—ନୀଳମଣି ମଧ୍ୟରେ; ରସାରେ—ପୃଥିବୀରେ; ରସାରୁହରୁ—ବୃକ୍ଷରୁ, ସୁସାରେ—ବିନା ଆପତ୍ତିରେ ।

ଅନୁବାଦ—(ର) ହେ ସଖି, ସଖୀମାନଙ୍କର ହିତ କଥାକୁ ଆଦର ନ କରି ଯେବେ ଶୀଘ୍ର ପ୍ରିୟତମଙ୍କର ସ୍ନେହପାଶରେ ଆବଦ୍ଧ ହୋଇ ପଡ଼ିଅଛୁ, ତେବେ ହେ ସୁନ୍ଦରି; ଯେପରି ଶତ୍ରୁମାନେ ନ ହସନ୍ତି, ସେପରି ଆତ୍ମରକ୍ଷା କରିବାକୁ ଯତ୍ନ କର ।



ରାଗ—ଖଣ୍ଡକାମୋଦୀ—ଅବକାଶ

ଲୀଳାନିଧି ହେ, ଲାଜେ ମୁଁ ଗଲିଟି ସଢ଼ି ।
ଲୁଗୁଇଛ କାହିଁ ଶ୍ୟାମ ହେ ଦିଅ ମୋ ଲଗି-ଶାଢ଼ୀ । ପଦ ।

ଲଭି ତୁମ୍ଭଙ୍କୁ ପ୍ରାଣବନ୍ଧୁ କରି, ଲୋକହସାରେ ଯେବେ ପିଣ୍ଡ ସରି,
ଲମିବ ଯେବେ ପାଇ ନିନ୍ଦା ବାଉ, ଲଗିଲି ଆପଣଙ୍କୁ କେହ୍ନେ ଆଉ । ୧ ।
ଲକ୍ଷ ଲକ୍ଷ ଗୁଣ ଅଛୁଟି ମୋର, ଲଲାମ ଆଦି ଭୂଷା ସଜ କର,
ଲଭିଥିବ ଭୂରୁ ମଧ୍ୟ ତିଳକ, ଲେଖିଦିଅ ବେଗେ ନ ଦେଖୁ ଲୋକ । ୨ ।
ଲୋଭି, ଶ୍ରୀଭୁଜବନ୍ଧ ଶିଥିଳାଅ, ଲତା ଗହନେ ଗହନେ ପଳାଅ,
ଲାଗିଛି ଲାକ୍ଷା ମୁକୁଟ ଶିଖଣ୍ଡେ, ଲାଜ କଥା ଲୋକେ ଦେଖିଲେ ଦାଣ୍ଡେ ।୩।
ଲଗାଇଛ ହାଟ ଯେଉଁ ରସରେ, ଲୁଟିବ ସିନା କାଲି ପ୍ରଦୋଷରେ,
ଲଙ୍ଘି ଆଶ୍ରିତେ ଥିବା କୃପାସିନ୍ଧୁ, ଲାଞ୍ଛିଆଟି କେଡ଼େ ହେଲ ହେ ବନ୍ଧୁ ।୪।
ଲଳିତା ନୋହେଟି ଯେ ଡାକୁଅଛି, ଲକ୍ଷେ ଦୁଷ୍ଟେ ରଖିଅଛି ମୁଁ ବାଛି,
ଲଘୁ କରିଦେବ ଦେଖିବା କ୍ଷଣେ, ଲେଖାଧିପ ଅଷ୍ଟଦୁର୍ଗର ଭଣେ । ୫ ।

---

ଅନନ୍ତର ଏହି କଥା ଶୁଣି ସେହି ଆକର୍ଣ୍ଣବିସ୍ତୃତଚଞ୍ଚଳନୟନା, ତପ୍ତକାଞ୍ଚନବର୍ଣ୍ଣା ରତିକ୍ରୀଡ଼ାକ୍ଳାନ୍ତା ରାଧା ଫୁଲମାନଙ୍କୁ ଏଣେ ତେଣେ ଫିଙ୍ଗିଦେଇ ଲଜ୍ଜା ଓ ଭୟ ସହିତ ଉଠି ଶ୍ରୀକୃଷ୍ଣଙ୍କୁ କହିଲେ—“ଲୀଳାନିଧି ହେ” ଇତ୍ୟାଦି ।



(ଲ) ଲୀଳାନିଧି—ଲୀଳାପ୍ରିୟ; ସଢ଼ିଗଲି—ଅବସନ୍ନ ହୋଇଗଲି; ଲଗିଶାଢ଼ୀ—ପିନ୍ଧାଶାଢ଼ୀ; ଲମିବ—ଅବନତ ହେବ; ନିନ୍ଦାବାଉ—ଅପବାଦର ଯନ୍ତ୍ରଣା; କେହ୍ନେ—କିପରି; ଲଲାମ—ଲଲାଟଭୂଷଣ; ଭୂଷା—ଅଲଙ୍କାର; ସଜକର—ସଜାଡ଼ି ଦିଅ; ଶ୍ରୀଭୁଜବନ୍ଧ—ବାହୁପାଶ; ଗହନ—ବନ; ମୁକୁଟଶିଖଣ୍ଡେ—ମୟୂରଚୂଳମୁକୁଟରେ; ଲାକ୍ଷା—ଅଲତା; ଲୁଟିବ—ଲୁଟିକରିବ; ପ୍ରଦୋଷରେ—ସନ୍ଧ୍ୟାବେଳେ; ଲଙ୍ଘି—ହଇରାଣ କରି; ଲଘୁ କରିଦେବ—ଅପମାନିତ କରିଦେବ; ଲେଖାଧିପ—ଇନ୍ଦ୍ର, ରାଜା ।

ଅନୁବାଦ—(ଲ) ପୂର୍ବଦିଗରୂପ ନାୟିକା କଟି ଦେଶରେ ଦୀର୍ଘ ରକ୍ତବର୍ଣ୍ଣ ବସ୍ତ୍ର ଦେଖାଇ ହେଲଣି, ଅର୍ଥାତ୍ ପୂର୍ବଦିଗର ଆକାଶରେ ଅରୁଣୋଦୟ ଦେଖାଗଲାଣି; ହେ ଯୁବତୀମାନମନମୋହନ, ମୋ କଞ୍ଚୁକର ପଣତ ଛାଡ଼ିଦିଅ ।

(ଲ) ଲମ୍ବମମ୍ବରମାରକ୍ତଂ ପ୍ରାଚୀ ପ୍ରାଚୀକଣ୍ଠର କଣ୍ଠୌ,
ବାଳାହ୍ମଦସ୍ୟୁପଞ୍ଚେଷୋ ମୁଞ୍ଚ ଯତ୍ରକଞ୍ଚୁକାଞ୍ଚଳଂ ।

ଅମନ୍ଦାନନ୍ଦଗୀଯୂଷନସ୍ୟନ୍ଦସନ୍ଦୋହଶୁଦ୍ଧଳସ୍ୟନ୍ଦନପଦଦମ୍ପତ୍ତନନଦୈ-ନିଶାଚରମନ୍ଦଶାସ୍ମାରକବନେଚରଚରଣାଧୂଧଧ୍ୱନଭର୍ଯମୁନାବାଃପୁରବକଙ୍ଗରବ-ନ୍ଦବୃନ୍ଦଭୁନ୍ଦମରନ୍ଦପାନପ୍ରମୁଦତାଳପାତ୍ରଶ୍ରୀତଝଙ୍କାରୈର୍ନନ୍ଦମନ୍ଦିରଗୋପୁରବ-ଲମ୍ବବନ୍ଦନକୁରମ୍ବସ୍ତବପାଠପାଟବୈର୍ବାହ୍ୱନ୍ୟବଗାହାଗତଗୋପୀଜନାଭରଣରଣ-ତ୍କରଣୈଃ ପରିରଭ୍ୟମାଣପ୍ରାଭାତକଡ଼ିଣ୍ଡିମରବାଡ଼ମ୍ବରୈସଂବୃଂତୈଃପ୍ୟମ୍ବରତଳେ ଶନୈର୍ନିକୁଞ୍ଜାନ୍ନିଷ୍କ୍ରାନ୍ତାଂ କାନ୍ତାଂ ପ୍ରତି ସଖ୍ୟଃ ।

---

ରାତ୍ରିବିରହ ପରେ ମିଳନ ଆଶାରେ ଚକ୍ରବାକଦମ୍ପତି ଅତି ଆନନ୍ଦିତ ହୋଇ ରବ କଲେଣି, ବନ୍ୟକୁକ୍କୁଟମାନେ ପ୍ରଭାତସୂଚକ ରବ ଆରମ୍ଭ କରି ଦେଲେଣି, ଯମୁନାଜଳ ପ୍ରବାହରେ ପ୍ରସ୍ଫୁଟିତ ପଦ୍ମ ମଧ୍ୟରେ ଭ୍ରମରବୃନ୍ଦ ମଧୁପାନ କରୁ କରୁ ଝଙ୍କାର କଲେଣି । ନନ୍ଦଙ୍କ ନବର ଦ୍ୱାରଦେଶରେ ଥିବା ଭାଟମାନେ ସ୍ତବପାଠ ଆରମ୍ଭ କଲେଣି । ଏହିସବୁ ଶବ୍ଦ ସଙ୍ଗେ ଯମୁନାକୁ ସକାଳୁ ଗାଧୋଇ ଆସୁଥିବା ଗୋପୀମାନଙ୍କର ଅଳଙ୍କାର ଧ୍ୱନି ସଙ୍ଗେ ପ୍ରଭାତସୂଚକ ଡିଣ୍ଡିମ ଶବ୍ଦ ମଧ୍ୟ ଶୁଣା ଗଲେଣି । ଏହିସବୁ ଶବ୍ଦଦ୍ୱାରା ଆକାଶପୂର୍ଣ୍ଣ ହେବାରୁ ରାଧା ଯେତେବେଳେ ଧୀରେ ଧୀରେ କୁଞ୍ଜ ମଧ୍ୟରୁ ବାହାରିଲେ, ସେତେବେଳେ ସଖୀମାନେ ତାଙ୍କୁ ପରିହାସରେ କହୁଅଛନ୍ତି—"ବିଚର ବେଶ ମଞ୍ଜୁଲାରେ" ଇତ୍ୟାଦି ।

—*—

(ବ) ମଞ୍ଜୁଳା—ସୁନ୍ଦରୀ; ସ୍ୱଚ୍ଛନ୍ଦଶୀଳା—ସ୍ୱଚ୍ଛନ୍ଦଚିତ୍ତବନ୍ଦପୂର୍ଣା; ବିଭାବରୀ ଅର୍ଦ୍ଧେ—ଅଧ ରାତିରେ; ବଲ୍ଲୀନିଳୟ—ଲତାକୁଞ୍ଜଗୃହ, ବିହାରଲୋଳ—କ୍ରୀଡ଼ାପାଇଁ ଉତ୍ସୁକା; ବାସ—ଲୁଗା, ବିଲକ୍ଷଣ—ବିଶିଷ୍ଟ, ଅସାଧାରଣ; ବ୍ୟସ୍ତ—ଇତସ୍ତତଃ ଲିପ୍ତ, ଚନ୍ଦମାଛ—କସ୍ତୁରୀ ପ୍ରଭୃତିଦ୍ୱାରା ଗଣ୍ଡସ୍ଥଳରେ ଅଙ୍କିତ ହୋଇଥିବା ମାଛର ଚିହ୍ନ, ବ୍ରଣଗଣ—ଖଣ୍ଡିଆ ଚିହ୍ନ, ନବ ପଲ୍ଲବ—ନୂଆ ପତ୍ର (ରକ୍ତିମା ଅର୍ଥରେ), ବିଶ୍ଲଥ—ଢିଲା, ଦୁଗୁଲା; କାଛ—ଭିଡ଼ି କରି; ବଲ୍ଲୀକ—ଲତାକୁ, ବାସରେ—ଦିନ ବେଳେ, ବିଜନେ—ନିର୍ଜନ ସ୍ଥାନରେ, ସଞ୍ଚରୁ—ବୁଲୁଛୁ; ବିନସ୍ୱନସ୍ୱବଦତ—ବିନସ୍ୱ ଓ ନତରେ ନିପୁଣା, କଳାବତୀ—ସ୍ତ୍ରୀ କୁଶିଳନିପୁଣା, ବିରୂପାକ୍ଷଦେବବିପକ୍ଷ—ଶିବଙ୍କ ଶତ୍ରୁ, କାମ; ବଲ୍ଲବଯୁବତୀ—ଗୋପାଙ୍ଗନୀ ।

ଅନୁବାଦ—(ବ) ହେ ଶିରୀଷପୁଷ୍ପାଙ୍ଗି, ତୁ ତ ସଖୀଜନମାନଙ୍କର କୋମଳ ଆଲିଙ୍ଗନ ସହିପାରୁ ନାହିଁ, ସେହି କୋମଳାଙ୍ଗୀ ତୁ ଆଜ କପରି ନୀଳରତ୍ନସ୍ୱରୂପ ବାହୁ ଅର୍ଗଳରେ (କଳଣିରେ) ଅବରୁଦ୍ଧା (ବନ୍ଧା) ହେଲୁ । ଓଃ, ଏ ବଡ଼ କଷ୍ଟର କଥା !

## ୭

ରାଗ—ସାବେରୀ

ବିବିଧ ବେଶ ମଞ୍ଜୁଳା ରେ ବାଳା, ବିବୁଧ ଗୁରୁସୁଶୀଳା,
ବିଭାବରୀ ଅର୍ଦ୍ଧେ ଏକାକୀ ଏକାକୀ ହୋଇ ରହି ଫୁଲତୋଳା ରେ
ବିଳାସକୁଶଳା ରେ, ବଲ୍ଲୀନିଳୟୁବିହାରଲୋଲା । ୧ ।
ବାଳକାନ୍ତ ବାସ ପଛ ରେ ବାଳା, ବଞ୍ଚୁଥିଲୁ ଅନୁସରି,
ବିଲକ୍ଷଣ ବନବିହାରଉତ୍ସବ ବେଳେ ଯା ଦେଲୁ ପାଶୋରି ରେ,
ବିଗୁରୁ ତ ଗୋରୀ ରେ, ବିଶେଷ କାହ୍ନଙ୍କ ପ୍ରୀତି ଆଚରି । ୨ ।
ବ୍ୟସ୍ତ ହୋଇ ଚଳମାନ୍ତୁ ରେ ବାଳା, ବ୍ରଣଗଣ ତ ଦିଶୁଛି,
ବିମ୍ବାଧରୁ ନବପଲ୍ଲବମାନଙ୍କୁ ବାଣ୍ଟିଲୁ କି କହୁ କହୁ ରେ,
ବିଶ୍ଲଥ ହୋଇଛୁ ରେ, ବାସ ପିନ୍ଧିଥାଉ ପଗ୍ର କାଛୁ । ୩ ।
ବଲ୍ଲୀକି ଅନାଇ ଦୂରୁ ରେ ବାଳା, ବାସରେ ତ ଭସ୍ମ କରୁ,
ବ୍ରଜେ ଆଜ ଶୁଣି ଆସିଲୁ ତୁ ପୁଣି ପ୍ରତିରାତି ଆସି ଘରୁ ରେ,
ବିଜନେ ସଞ୍ଚରୁ ରେ, ବଡ଼ ବିଷମ ଏ ଯା ନ ଡରୁ । ୪ ।
ବିନୟୁନୟୁବସନ୍ତି ରେ ବାଳା, ବିମୋହନ କଳାବତି;
ବିରୁପାକ୍ଷଦେବ-ବିପକ୍ଷକୁ ଜିଣି ଯଶେ ମଣ୍ଡିଲୁ କି କ୍ଷିତି ରେ,
ବିଲ୍ଲବଯୁବତି ରେ, ବନ୍ଦେ ଅଷ୍ଟଦୁର୍ଗଧରାପତି । ୫ ।

(ବ) ଯା ଇତ୍ଥଂ ଶିରୀଷାଙ୍ଗଲତେ ସହେଥା ନାଳୀଜନାଲିଙ୍ଗନମପ୍ୟଗାଢ଼ଂ,
ଆମାଳରତ୍ନାର୍ଗଳଯୁଗରୁଦ୍ଧା ସୈବଭ୍ରମାସୀଃ କଥମଦ୍ୟ କଷ୍ଟଂ ।
ସାନ୍ତଃପ୍ରଣୟୁହାସପରିହାସୈଙ୍ଗର୍ଭିଉକ୍ତୈବମାଳୀନାମାଲୀନାଯ୍ୟାମଙ୍ଗେଷୁ ଲଜ୍ଜାୟୁ ଗ୍ଲାନିବିମର୍ଦ୍ଦିତାଙ୍ଗ୍ୟାମଙ୍ଗୀକୃତ୍ୟାଙ୍ଗରାଗାଦିସଂସ୍କାରଂ ସାଲସଲସନ୍ତ୍ ସମୀରେଣ ଯଥା କଦମ୍ବକଦମ୍ବସମ୍ବାଧେନ ଛାତ୍ରୈଃ ସହଚରୀଭିରବଗାହାୟୁ ଯମୁନାବାଃପ୍ରବିଷ୍ଟାୟୁାଂ ରାଧାୟୁାମକସ୍ମାଦାଗତଃ ସାନ୍ଦୀପନିମୁନିନନ୍ଦନଃ ସାନନ୍ଦଃ ଶ୍ରୀକୃଷ୍ଣଂ ପ୍ରତି ସସ୍ମିତଂ ।

ଆଳୀମାନଙ୍କର ଏହି ପରିହାସ କଥାରେ ରାଧା ଲଜ୍ଜାରେ ସଙ୍କୁଚିତ ହୋଇଗଲେ । ତାଙ୍କ ଶରୀର ରତିରଙ୍ଗରେ ବଡ଼ କ୍ଳାନ୍ତ ହୋଇ ପଡ଼ିଥିଲା, ଧୀର ସମୀରଣ ପ୍ରବାହରେ ଆନ୍ଦୋଳିତ କଦମ୍ବବୃକ୍ଷସମାକୁଳ ସଙ୍କୀର୍ଣ୍ଣ ପଥରେ ତନୁ ମାର୍ଜନ ପାଇଁ ସୁଗନ୍ଧ ଦ୍ରବ୍ୟମାନ ଧାରଣ କରିଥିବା ଯେଉଁ ସଖୀମାନଙ୍କ ସଙ୍ଗରେ ସେ ଯମୁନାଜଳରେ ପ୍ରବେଶ କଲେ ।

# ଶ

ଶ୍ୟାମ ଶିଖଣ୍ଡଚୂଳ, ଶ୍ରମ କି ଆଜ ଯାକେ ହେଲା ସଫଳ । ପଦ ।

ଶର୍ବରୀ ନିଦ୍ରା ବିନା ଗଲା କି ସରି, ଶମ୍ବରପରପୁର କଲ କି ଚୁରି । ୧ ।
ଶ୍ରୀଅଙ୍ଗ ବେଶ କର୍ପା ଏପରି ଆଜ, ଶରଦଚନ୍ଦ୍ର ଚୁମ୍ବୁ ନାହିଁ କି ଲାଜ ।୨।
ଶିଶୁ ହେଲେହେଁ ତୁମ୍ଭେ କଳଭ * ସରି, ଶଶକଶୋଷିଙ୍କି ଦେଲ ଯେ ସାରି ।।
ଶିଖିଷମାଳା ଦଳିଦେଇ କୁଠାରେ, ଶଙ୍କା ନ କଲ ସଖୀମାନଙ୍କଠାରେ । ୪ ।
ଶରମପ୍ରଦ ଆଜ ସରିକି ହେଲା, ଶମନସ୍ୱସା-ତଟ-ଅଟବୀବୁଲା । ୫ ।
ଶିର ସୁନ୍ଦର ହସେ ଯାବକ ବୋଳେ, ଶରଣ ବୋଲି କି ପଡ଼ିଲ ପାଦ ତଳେ ॥
ଶପଥ ଶତ ଅଛୁ କହୁଛି ସତେ, ଶ୍ରୀ ବାଲୁଙ୍କେଶ ନୃପ ରଚିଲେ ଗୀତେ । ୭ ।

(ଶ) ନବଶୈଶବସୌକୁମାର୍ଯ୍ୟଧୂର୍ଯ୍ୟାଙ୍ଗୁଳୀଲୋଦ୍ଧୃତଦୁର୍ଦ୍ଧରାଚଳସ୍ୟ,
ତବ ତସ୍ୟ ବାଲାଢ୍ୟ ବାଳକାୟାଃସ୍ତନତାଳଦ୍ୱୟଦାରଣଂ ନ ଚିତ୍ରଂ ।
ଚିରେଣ ଲବ୍‌ଧାକ୍ଷବ୍‌ଧମନୋରଥ ଫଳତୟା ଗର୍ବିତୋଽପି ଖର୍ବିତପର୍ବ-ଶର୍ବରୀରମଣାସାଧ୍ୟବୋଦ୍ଧବ୍ୟଂ ନନ୍ଦଯଶୋଦୟୋଃ ପୁରତସ୍ତବାଚରିତ-ମିତ୍ୟୁକ୍ତବନ୍ତ ମଧୁମଙ୍ଗଳେ ସପ୍ରଣୟମୀଷତ୍ ସସ୍ମିତଂ ତଂ ପ୍ରତି କୃଷ୍ଣଃ, ଧୂର୍ତ୍ତାର୍ତ୍ତସ୍ୟ ବାର୍ତ୍ତା ବାର୍ତ୍ତାମପି କଂ ନାଭ୍ରପ୍ରେକ୍ଷି ଭିନ୍ନାମବଲମ୍ବସେ ଦାରୁଣାଂ ସରଣୀମ୍ ।

---

ଏହି ସମୟରେ ସାନ୍ଦୀପନି ମୁନିଙ୍କ ପୁତ୍ର ମଧୁମଙ୍ଗଳ ହଠାତ୍ ଉପସ୍ଥିତ ହୋଇ ହସି ହସି କୃଷ୍ଣଙ୍କୁ କହୁଅଛନ୍ତି—"ଶ୍ୟାମ ଶିଖଣ୍ଡଚୂଳ" ଇତ୍ୟାଦି ।

(ଶ) ଶିଖଣ୍ଡଚୂଳ—ମୟୂରପୁଚ୍ଛମୁକୁଟଧାରୀ, ଶର୍ବରୀ—ରାତି, ଶମ୍ବରପରପୁର—କାମଦେବଙ୍କ ରାଜଧାନୀ, ଚୁରି—ଲୁଟି, ଶରଦଚନ୍ଦ୍ର—ଶ୍ରୀକୃଷ୍ଣଙ୍କ ଅଧରେ, କଳଭ—ହସ୍ତୀ ଛୁଆ, ଶଶକଶୋଷି—କୋମଳପ୍ରାଣ ଠେକୁଆ ପରି କୋମଳାଙ୍ଗୀ ରାଧା, କୁଠାର—କୁରାଢ଼ି, ଶରମପ୍ରଦ—ଶର୍ମଦାତ୍ରୀ, ସୁଖପ୍ରଦ; ଶମନସ୍ୱସା—ଯମ ଭଉଣୀ, ଯମୁନା; ଅଟବୀବୁଲା—ବଣରେ ବୁଲିବା, ଶିର—ମସ୍ତକ, ଯାବକ—ଅଳତା, ବୋଳ—ଲେପ, ପାଦ ତଳେ—ଗୋଡ଼ତଳରେ, ଶପଥଶତ—ଶହେ ଥର ରାଣ ।

ଅନୁବାଦ—(ଶ) ହେ ବଳଶାଳୀ, ଯେଉଁ ଲୋକ ଶୈଶବକାଳରେ ସୁକୋମଳ ଅଙ୍ଗୁଳି ସାହାଯ୍ୟରେ ଦୁର୍ଦ୍ଧର ଗୋବର୍ଦ୍ଧନ ପର୍ବତକୁ ଟେକିଥିଲେ; ତାଙ୍କ ପକ୍ଷରେ (ଅର୍ଥାତ୍ ତୁମ୍ଭ ପକ୍ଷରେ) ବାଳିକାର ତାଳଫଳ ସଦୃଶ ସ୍ତନଦ୍ୱୟର ବିଦାରଣ ବିଚିତ୍ର ନୁହେ ।

---

* 'କେଶରୀ ସରି' ପାଠାନ୍ତର ।

# ସ

ରାଗ—ମୁଖାବରୀ

ସପଡଟି ମୋର ରେ, ସହ ଏହି ଥର ରେ,
ସାର ହାରମସାରମଣିବର ପରି ଧରି ବକ୍ଷଃସ୍ଥଳେ ନିରନ୍ତର
ନ ଫିଙ୍ଗି ପୁଣି ହଟି ସୁନ୍ଦର ନୁହଇଟି ବଚନର ଭରସା ବଢ଼ାଅ ଅପରିମିତ ।ପଦ।
ଶୁଣିଲେ ଆଉ କେ ବ୍ରଜେ, ସରିଯିବ ସିନା ଲାଜେ,
ସାହା ତୁ ନୋହିଲେ କଷ୍ଟ, ସଂସାରେ ନକ ମୁଁ ଅଷ୍ଟ ।୧।
ସାଧୁଜନ କୁକ୍ଷିକୂପେ ଭଲ ମନ୍ଦ ସିନା ଛପେ,
ସଂହର କ୍ରୋଧ ଉଦୟ, ସହଜେ ତୁ ସହୃଦୟ ।୨।
ସବୁ ଅନ୍ୟାୟ ଚରିତ, ଶିକ୍ଷାକୁ ଗୁରୁ ତୁହି ତ,
ସମୟେ କାଢ଼ୁ ଚିଠାଟିକି, ସଖା ଲକ୍ଷଣ ଏଟି କି ।୩।
ସମାଂସମୀନା ଅୟୁତେ ସମର୍ପି ଦେବଟି ତୋତେ,
ସମ୍ଭାଳ ମୋର ଆତୁର, ସର୍ବସ୍ୱ ପରା ତୁ ମୋର ।୪।
ସାକ୍ଷାତ ଦେଖିଲୁ ପରି, ସାକ୍ଷୀ ହେବାକୁ ବାହାରି
ସାଧିବାର ଅବସର, ସଫଳ ନୁହେଁ ମୁଁ ତୋର ।୫।
ସାନ୍ଦୀପନସୁତ ଯତି, ସେ କି ଜାଣେ ବୋଲି ପ୍ରୀତି,
ସରସେ ପିଠିବେ ତକ୍‌କା, ସମାଦରୁ ଏତେ ଏକା ।୬।
ଶୁଣି କିଶୋର ବଚନ, ସଖା କଲେ ଆଲିଙ୍ଗନ,
ସୁଦାମା ଅଷ୍ଟବର୍ଗର, ସନ୍ତୋଷେ ଯୋଡ଼ିଲେ କର ।୭।

---

ତୁମ୍ଭର ମୁଖ ପୂର୍ଣ୍ଣିମାଚନ୍ଦ୍ରର ଗର୍ବକୁ ଖର୍ବ କରେ, ହେ କୃଷ୍ଣ, ବହୁଜନର ଅଭିଳାଷ ପୂର୍ଣ୍ଣ ହୋଇଯିବାରୁ ତୁମ୍ଭେ ଗର୍ବିତ ହୋଇଅଛ । ହେଉ; ଆଜ ତୁମ୍ଭ ବାପ ମାଙ୍କ ଆଗରେ ଏ କଥା ବୁଝାଯିବ । ମଧୁମଙ୍ଗଳ ଏହିପରି କହନ୍ତେ ଶ୍ରୀକୃଷ୍ଣ କଅଁଳ ଭଙ୍ଗୀ ଓ ହାସ୍ୟ ସହିତ ପ୍ରୀତି ପ୍ରକାଶପୂର୍ବକ କହିଲେ, ହେ ଧୂର୍ତ୍ତ, ମୁଁ ବର୍ତ୍ତମାନ ଅତ୍ୟନ୍ତ ଆର୍ତ୍ତ ହୋଇଅଛି; ମୋର କୁଶଳ ପ୍ରଶ୍ନ ନ ପଚାରି ଏପରି ବିପରୀତ ନିଦାରୁଣ ମାର୍ଗ କାହିଁକି ଅବଲମ୍ବନ କରୁଅଛ ?

ଅନନ୍ତର ଶ୍ରୀକୃଷ୍ଣ ମଧୁମଙ୍ଗଳକୁ କହୁଅଛନ୍ତି—"ସପଡଟି ମୋର ରେ" ଇତ୍ୟାଦି ।

---

(ସ) ସପଡ—ଶପଥ, ରାଣ; ସାର—ଉତ୍କୃଷ୍ଟ; ହାରମସାରମଣିବର—ହାର ମଧ୍ୟରେ ଥିବା ଶ୍ରେଷ୍ଠ ଇନ୍ଦ୍ରନୀଳମଣି; ହଟି—ହଠ କରି, କୌତୁକରେ; ଭରସା—ଆଶା;

(ଘ) ଅନ୍ୟୋଽନ୍ୟାଶ୍ଳେଷଶର୍ମବ୍ୟକ୍ତକରବମଲସ୍ୱାନ୍ତସନ୍ତୋଷବନ୍ତା—
ବନ୍ୟୋନ୍ୟାକ୍ଷୀଣଲକ୍ଷ୍ମୀକ୍ଷଣଗଳିତସମସ୍ତାନ୍ତରାୟୌ ସଖାୟୌ ।
ସଶ୍ରଦ୍ଧାବର୍ଦ୍ଧପଦ୍ଧତ୍ୟୁପନତସଖିଭିଃ ସାର୍ଦ୍ଧମାନଦ୍ଧ ବଂଶୀ—
ଶୃଙ୍ଗଧ୍ୱାନାଢ୍ୟଘାଟଂ ତଦପଘନଭୁବୋ ଜଗ୍ମତୁସ୍ତଦ୍‌ଗ୍ନୂଡଶ୍ଚୈଃ ॥

ତତସ୍ତସ୍ୟାସ୍ତୀରେଽପ୍ୟନ୍ୟସ୍ମିନ୍ନାମାଲଶତପନ୍ନପନ୍ନସଗୋନ୍ନନେନ୍ନାଭି-ବଲ୍ଲବଚଞ୍ଚଦାଧରାଭିର୍ଣ୍ଣି ବାଦବଲୋକ୍ୟ ସବ୍ରଜବାଳକବ୍ରଜଂ ସମୁଦ୍ଦଣ୍ଡତାଣ୍ଡବ-ପାଣ୍ଡିତ୍ୟଶୋଭାପିଚଣ୍ଡିଳଚରଣାମ୍ଭୋଜଂ କଞ୍ଚିଦ୍ଭବଶିଷ୍ଟକିଶୋରଂ କୋଶଙ୍କ ମିଥଃ କଥାପ୍ରେମକରେ ।

---

ଅପରିମିତ—ଅନନ୍ତ; ସାଦ୍ର—ଘନୀଭୂତ; କାକ—କଅଁଳ; କୁକ୍ଷିକୂପେ—ପେଟରୂପ କୂଅରେ; ଛପେ—ଲୁଚେ; ଫଦ୍ଦର—କମାଅ; ସହୃଦୟ—ବନ୍ଧୁ; ଚରିତ—ଆଚରଣ; ସମାଂସମୀନା—ଯେଉଁ ଗାଈ ପ୍ରତିବର୍ଷ ପ୍ରସବ କରେ (ଅର୍ଥାତ୍ ଦୁଧିଆଳି ଗାଈ), ସମ୍ପାଳ—ରକ୍ଷାକର; ଆତୁର—ମହତ୍ତ୍ୱ; ଅପନୂ—ବନ୍ଧୁ; ସାନ୍ଦୀପନସୁତ ଯତ—ମଧୁମଙ୍ଗଳ ଜଣେ ତପସ୍ୱୀ; ସରସେ—ଆନନ୍ଦରେ; ତଳ୍‌କା ଫିଟିବେ—ଡେଙ୍ଗୁରା ଦେବେ, ପ୍ରଚାର କରିବେ; ସୁନାସୀ—ଇନ୍ଦ୍ର ।

ଅନୁବାଦ—(ଘ) ଶ୍ରୀକୃଷ୍ଣ ଓ ମଧୁମଙ୍ଗଳ ଦୁହେଁ ପରସ୍ପରକୁ ଆଲିଙ୍ଗନ କରି ଅନ୍ତଃକରଣରେ ବିମଳ ଆନନ୍ଦ ଅନୁଭବ କଲେ, ପରସ୍ପର ଶୋଭା ସନ୍ଦର୍ଶନରେ ଉଭୟଙ୍କ ମନରୁ ସମସ୍ତ ବାଧା ଅନ୍ତର୍ହିତ ହୋଇଗଲା, ସସ୍ନେହରେ ଦୁହେଁ ଯାଉ ଯାଉ ଅନ୍ୟ ସଖାମାନଙ୍କ ସଙ୍ଗେ ଅର୍ଦ୍ଧପଥରେ ମିଶି ମୃଦଙ୍ଗ-ବଂଶୀ-ଶିଙ୍ଗାନାଦପୂର୍ଣ୍ଣ ସେହି ଯମୁନାତୀରକୁ ଗମନ କଲେ ।

ଅନନ୍ତର ସେହି ଯମୁନାର ଅନ୍ୟ ଘାଟରେ ସମାବେଶ ହୋଇଥିବା ପଦ୍ମ-ପଲାଶଲୋଚନା ପଲ୍ଲବାରୁଣାଧରା ଗୋପାଙ୍ଗନାମାନେ ନବୀନଯୁବକ ନୃତ୍ୟପଟୁ ଶ୍ରୀକୃଷ୍ଣଙ୍କୁ ବ୍ରଜବାଳକମାନଙ୍କ ସଙ୍ଗେ ଅବଲୋକନ କରି ପରସ୍ପର ଆଳାପ କରିବାକୁ ଲାଗିଲେ—"ଷଟ୍‌ପଦ ନୀଳକେଶା" ଇତ୍ୟାଦି ।

---

(ଙ) ଷଟ୍‌ପଦନୀଳକେଶା—ଭ୍ରମର ପରି ନୀଳବର୍ଣ୍ଣ କେଶ ଥିବା ଗୋପୀମାନେ, ସର୍ବଂସହା—ପୃଥିବୀ, ନବବାରିବାହ—ନୂତନ ମେଘ, ବହିଷ୍ଠ—ବର୍ହୀ—ମୟୂର (ଶ୍ରୀକୃଷ୍ଣଙ୍କ ସଖାମାନଙ୍କ ଅର୍ଥରେ), ସ୍ମର ସରଦାର—କାମରୂପକ ସେନାପତି, ଫଉଜ—ସୈନ୍ୟ, ସରୋଜସୁନ୍ଦରନେତ୍ରା—ପଦ୍ମ ପରି ସୁନ୍ଦର ନେତ୍ର ଯାହାଙ୍କର (ଗୋପାଙ୍ଗନା ଅର୍ଥରେ); ସୁରେଶ୍ୱରରତ୍ନ—ଇନ୍ଦ୍ରନୀଳମଣି; ଜଙ୍ଗମ—ଗତିଶୀଳ; ଜମ—ସ୍ଥିତ; ସ୍ୱର୍ଣ୍ଣବର୍ଣ୍ଣାଏ—ସୁବର୍ଣ୍ଣ ପରି ବର୍ଣ୍ଣଧାରିଣୀ ସ୍ତ୍ରୀମାନେ; ସଂପାଦବେ—ଯାଇତ ରଖିବେ;



୬· ରାଗ—ଶଙ୍କରାଭରଣ ବା ମୋହନ

ଷଟପଦମାଳକେଶା ଆଗୋ ଗୃହଁ ଗୃହଁ,
ସର୍ବଂସହାରେ ଖେଳୁଛୁ ନବ ବାରବାହ;
ସମୀପରେ ତାର ରହି,
ସରଜୁଛନ୍ତି ନର୍ତ୍ତନ ଅନେକ ବରହୀ । ୧ ।
ସଜ ହୋଇ ସୁରସରଦାର ଅବା ଆସେ,
ସୁକାସୁ ଫଉଜ ଘେରଅଛୁ ଚଉପାଶେ,
ସାରଦେବ ପରା ଆଜ,
ସର୍ବୋଜସୁନ୍ଦରନେହା ଜନ-ମନ ଲଜ । ୨ ।
ସୁରେଶ୍ୱରରତନ କ ହେବାରୁ ଜଙ୍ଗମ,
ସବୁ ମଣିମାନଙ୍କୁ ମିଳଲା ସେହି କ୍ରମ
ସ୍ୱର୍ଣ୍ଣବର୍ଣ୍ଣାଏ ଏଣିକ,
ସମ୍ଭାହବେ ମୂର୍ତ୍ତିମନ୍ତ ରତନଶ୍ରେଣୀକ । ୩ ।
ସଞ୍ଚରଣଶୀଳ ନବ ତମାଳ ଭୂରୁହ,
ସଙ୍ଗେ ଘେନ ଆସୁଅଛୁ ସଖା-ଶାଖିବ୍ୟୂହ,
ଶୁକ ଶାରୀ ପରଭୃତ,
ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ । ୪ ।
ସୁରଧୂନୀ ଷଟରେ କରଥିବା ଯେତେ ତପ,
ସଙ୍ଗାଳ କର ଏ ତାପିଞ୍ଛର ଅନାପତ
ସୁଖେ ବଞ୍ଚିବା ବସନ୍ତେ,
ସାମନ୍ତ ସୁଧାଂଶୁ ଜଗଦେବ ବୋଲେ ଗୀତେ । ୫ ।

---

ଭୂରୁହ—ବୃକ୍ଷ; ସଞ୍ଚରଣଶୀଳ—ଗତଶୀଳ; ଶାଖିବ୍ୟୂହ—ବୃକ୍ଷସମୂହ; ପରଭୃତ—କୋକିଳ; ସୁରଧୁନୀ—ସ୍ୱର୍ଣ୍ଣନଦୀ, ମନ୍ଦାକିନୀ; ତାପିଞ୍ଛ—ତମାଳବୃକ୍ଷ; ଅନାତପ—ଛାୟା; ସାମନ୍ତସୁଧାଂଶୁ—ସାମନ୍ତରାଜାମାନଙ୍କ ମଧ୍ୟରେ ଚନ୍ଦ୍ରମାସ୍ୱରୂପ ।

ଅନୁବାଦ—(ଷ) ହେ ସଖି, ଯାହାଙ୍କ ଆଗରେ ଓ ଗୃହପାଖରେ କଅଁଳା ବାଛୁରୀମାନେ ଖେଳୁଅଛନ୍ତି, ସେହି ଅତସୀପୁଷ୍ପସଦୃଶ ଶରୀରଧାରୀ ଲୋକଚକ୍ଷୁର ଆନନ୍ଦବର୍ଦ୍ଧକ ଏହି ବାଳକଟି କିଏ ?

*

(ଷ) ପୁରତଃପଶ୍ଚତୋଽପି ତର୍ଣ୍ଣକା ଦଧତି ହୀତ୍ତନମାଳ ଯସ୍ୟ ସଃ,
ଅତସୀସୁମନଣ୍ଡବଃ ଶିଶୁବ୍ବଦ କୋଽପ୍ୟଂ ଜନନେଶରଞ୍ଜନଃ ।

ଇତି କୌତୂହଳଲୋଲଲୋଚନାନାମାଭୀରସୁଭ୍ରୁହାକ୍ଷୀଣାମନ୍ୟୋଽନ୍ୟ-ସମ୍ଭାଷଣସମାପ୍ତାବେବ ନେଦିଷ୍ଠ ସୈକତାଙ୍ଗଣାଲଙ୍ଗିତଚରଣସରସିଜେ ନନ୍ଦବ୍ରଜେ ବଧ୍ୱସ୍ତଚତୁଷ୍କୋଟିକ ଜ୍ଞାନମପ୍ୟଂ ମଦନମୋହନ ଇତି ପ୍ରେମମନ୍ତ୍ରମା-ତିମ୍ଭରଃ ସମାବରାସୀତ୍ ।

---

ଅପୂର୍ବ ଶ୍ରୀକୃଷ୍ଣମୂର୍ତ୍ତିଦର୍ଶନଜନିତ କୌତୁକରେ ଚଞ୍ଚଳନେତ୍ରା ପଦ୍ମଲୋଚନା ଗୋପାଙ୍ଗନାମାନେ ଏହିପରି ପରସ୍ପର ଆଳାପ କଲେ, ଏହା ଶେଷ ହେବା ସମୟରେ ସେହି ନର୍ତ୍ତକମାନେ ନିକଟବର୍ତ୍ତୀ ଯମୁନା ସୈକତରେ ପଦାର୍ପଣ କରନ୍ତେ, 'ଏ ମଦନମୋହନ ଅଟନ୍ତି' ଗୋପୀମାନେ ନିଜର ସକଳ ଜ୍ଞାନ ଭୁଲିଯାଇ ଏହା ହିଁ କହିବାରେ ଲାଗିଲେ ।

---

(ହ) ହାମାର ପ୍ରାନେର୍ଦ୍ଧନ (ବଙ୍ଗଳା ଭାଷା)—ଆମର ପ୍ରାଣଧନ; ହରିହୟମଣି—ଇନ୍ଦ୍ରନୀଳମଣି, ଅପଘନ—ଦେହ, ଇନ୍ଦୁ—ଚନ୍ଦ୍ର; ଜମୁତକୋଷ—ମେଘ ପରି କୃଷ୍ଣବର୍ଣ୍ଣ କେଶ ଯାହାର, ହସି—କୌତୁକରେ ହସି କରି, ରଦାମ୍ବର—ଅଧର, ଫଳବନ୍ତ—ସଫଳ; ତରଳରତ୍ନ—ଦୀପ୍ତିବିଶିଷ୍ଟ ଉଜ୍ଜ୍ୱଳ ରତ୍ନ, ନମୁଚସୂଦନ—ଇନ୍ଦ୍ର ।

ଅନୁବାଦ—(ହ) ହେ ସଖି, ଏହି ଶ୍ରୀକୃଷ୍ଣଙ୍କର ଅପାଙ୍ଗଦୃଷ୍ଟିପାତ, ନୀଲୋତ୍ପଳ-ନିର୍ମିତ ଚଳନ୍ତା ଶର ପରି, ପଦ୍ମନୟନା ସୁନ୍ଦରୀମାନଙ୍କ ମନରେ କନ୍ଦର୍ପର ଉନ୍ମାଦ ଜାତ କରୁଅଛି । ବିଶ୍ୱବାସୀମାନେ ଏହି ଅପାଙ୍ଗ ଦୃଷ୍ଟିପାତଦ୍ୱାରା ତ ବଶୀଭୂତ ହୋଇଗଲେ, ଆଉ କାହିଁକି ବିମ୍ବାଧର ମୁରଲୀ ବଜାଇବାକୁ ଆୟାସ କରୁଅଛ ? ଆହା, କୋମଳ ବିମ୍ବାଧରରେ ରତ୍ନକଠିନ ମୁରଲୀସ୍ପର୍ଶ ବାଧା ଦେଉଅଛି ପରା !

ଅହୋ କ ବଚିତ୍ର କଥା ! ଏହି ମୟୂରଚୂଳିଆଙ୍କର ଚତୁରତର ଧୈର୍ଯ୍ୟବିଧ୍ୱଂସକାରୀ ବଂଶୀନିନାଦ ଶୁଣନ୍ତେ ଯମୁନାର ତରଳ ଜଳ ଘନୀଭୂତ ହୋଇଗଲା, କଠିନ ପାଷାଣସମୂହ ତରଳୀତ ହୋଇଗଲା, ବୃକ୍ଷମାନଙ୍କର ମୂଳରୁ ଅଗ୍ର ପର୍ଯ୍ୟନ୍ତ ରୋମାଞ୍ଚ ଜାତ ହେଲା, ମୃଗମାନେ କାନ ଡେରି ସ୍ଥିର ହୋଇ ରହିଗଲେ ଏବଂ ସର୍ପମାନେ ବିସ୍ମୟବିସ୍ତାରିତ ନୟନରେ ଅନାଇ ରହିଲେ ।

ଶେଷରେ କବି ପ୍ରାର୍ଥନା କରୁଛନ୍ତି—"କ୍ଷମାନୁକମ୍ପାଧର ହେ···"

---

।

# ୨

ରାଗ—ଗୌଡ଼ୀ

ହରି ହାମାର, ଏ ତ ପ୍ରାଣେଶ୍ୱର ଗୋ । ପଦ ।
ହରିହସ୍ତ ମଣିକ ଜିଣିଛୁ ଅପଘନ, ନିନ୍ଦଅଛୁ ଇନ୍ଦୁକୁ ବଦନ ଗୋ । ୧ ।
ହଜାରସଂଖ୍ୟକ ହେଲେହେଁ ମଦନ, ନୋହିବ ଏ ମୋହନ ସମାନ ଗୋ ।
ହଜ ନ ଯିବ ଜୀମୂତକେଶୀର କି ଜ୍ଞାନ, ଶୁଣୁ ଶୁଣୁ ମୃଦୁ ବେଣୁଗାନ ଗୋ ।୩।
ହଠି ଥରେ କରିବା କି ଋଦାମ୍ବର ପାନ, ହେଉ ଫଳବନ୍ତ ଯଉବନ ଗୋ ॥
ହାର ମଧ୍ୟରେ ଆମ୍ଭର ତରଳରତନ ଗୋ, ହେବେ କି ଏ ଯୁବଜୀବନ ଗୋ ॥
ହୃଷ୍ଟହୋଇ ଅଷ୍ଟଦୁର୍ଗନମୁଚସୂଦନ ଗୋ, କରେ ଏ ରସରେ ବିରଚନ ଗୋ ୬।

(ହ) ଏତସ୍ୟେକ୍ଷଣକୋଣବୀକ୍ଷଣବଲନ୍ନୀଳାରବିନ୍ଦାଶୁଗା—
ସାରୈଃ ସାରସସାରସୁନ୍ଦରଦୃଶାଂ କନ୍ଦର୍ପୋଦର୍ପୋଦେଯୁଃ ।
ଦାସ୍ୟଂ କିଂ ନ ବିବେଶ ବିଶ୍ୱମିପ୍ୟୁତୈଃ ତତ୍ କିଂ ମଣୀନାଂ ଗଣୈଃ,
ସମ୍ବାଧାଂ ମୁରଳୀଂ ଦୁରନ୍ତଖୁରଳୀଂ ବିମ୍ବାଧରସ୍ତୁ ମୃଷ୍ଟ ।
ଚରାଚରଧୈର୍ଯ୍ୟବିଧ୍ୱଂସିନି ବର୍ହାବତଂସବଂଶୀନିନଦେ ପ୍ରସରତ୍ୟର୍କଜାୟାଃ କାର୍କଶ୍ୟସ୍ୟ ଶିଳାବଳୀନାଂ ଜଳତାୟାଃ ଶାଖିନାମପ୍ୟାଶିଖଂ ସପୁଲକଭସ୍ୟ ମୃଗାଣାମୃତ୍କର୍ଣ୍ଣତାୟାଃ ଫଣିନାଂ ଚକିତବିଲୋଚନସ୍ୟାନୁଭବେ ବଭୂବ ।

---

(କ୍ଷ) କ୍ଷମାନୁକମ୍ପାଧର—ହେ କ୍ଷମାଶୀଳ, ହେ ଦୟାସାଗର; କ୍ଷୀରସାଗର-ସମ୍ଭବା—ଲକ୍ଷ୍ମୀ, ପରିରମ୍ଭ—ଆଲିଙ୍ଗନ, କ୍ଷିତିଚକ୍ରବାଳ—ପୃଥିବୀମଣ୍ଡଳ, ଶ୍ରୁତିଶିର-ଅବତଂସାକୃତି—ବେଦମନ୍ତ୍ରକର ଭୂଷଣସ୍ୱରୂପ, ମରାଳବିହରଣ—ବ୍ରହ୍ମା, ନିବାହ—ସମୂହ, ରଥାଙ୍ଗଯୁତ କର—ଚକ୍ରଧର; କରଚିଁତ ଚରଣ—ବ୍ରହ୍ମା ଶ୍ରୀକୃଷ୍ଣଙ୍କର ଚରଣ ସେବକ ଅର୍ଥରେ; ଧରାଚର ଶରଣ—ସମସ୍ତ ସଂସାରର ଆଶ୍ରୟ, ତମବର—ଚନ୍ଦ୍ର, ଦରବର—ସଦୃଶ, ନଖାଂଶୁ—ନଖର ଜ୍ୟୋତି, ଶିଖାଭରଣ—ମସ୍ତକର ଆଭରଣ, ନ ଭଣେଁ—ଉଚ୍ଚାରଣ କରେ ନାହିଁ, ଅନାଦରରହିତ—ଆଦର ସହିତ, ଅନାହୁଣି—ଗୁହିଁବା, ଅନାରତ—ସର୍ବଦା, ଅହିତ—ପାପ, ପତିତଜନାବହିତ—ପାପିଜନ ଉଦ୍ଧାରକାରୀ, କ୍ଷମ—ସମର୍ଥ, ଅଧିକାରୀ ବା ହକ୍‌ଦାର; ଅନୁପମ ଅନୁଭବ—ଯାହାର ମହିମା ଅତୁଳନୀୟ,

# କ୍ଷ

ରାଗ—କେଦାର

କ୍ଷମାନୁକମ୍ପାଧର ହେ,
କ୍ଷୀରସାଗରସମ୍ଭବାକୁଚକୁମ୍ଭଯୁଗଳପରିରମ୍ଭଚତୁର ହେ । ପଦ ।

କ୍ଷିତିଚକ୍ରବାଳ ମହାଖ୍ୟାତ ନିବାରଣ ହେ,
ଶ୍ରୁତିଶିର-ଅବତଂସୀକୃତ ଶ୍ରୀଚରଣ ହେ,
ମରାଳବହରଣ-କରାର୍ଚ୍ଚିତ ଚରଣ, ଧରାଭର ହରଣ, ଚରାଚର ଶରଣ,
ତରାବର କରଣ, ବରାବର ଚରଣ-ନଖାଂଶୁ ସୁରଗଣଶିଖାଭରଣ ହେ । ୧ ।

କ୍ଷଣେ ହେଲେ ନାମକୁ ନ ଭଣେ ମୁଁ ତୁମ୍ଭର ହେ,
ଜଣେ ତ ହେବାରୁ ପାପିଗଣେ ବଶମ୍ବର ହେ,
ମନା ନ କର ହିତ, ଅନାଦରରହିତ,-ଅନାଉଣି ନରତ, ଚନା କରୁ ଦୂରିତ
ଅନାରତ ମୋ ଚିତ୍ତ ମନାସୁଛି ଅହିତ, ଜନାର୍ଦ୍ଦନ ପତିତଜନାବହିତ ହେ ।୩।

କ୍ଷମ ତ ମୁଁ ନୁହେ ଅନୁପମ-ଅନୁଭବ ହେ,
ଯମଦଣ୍ଡରୁ ମୋ ରକ୍ଷା କେମନ୍ତେ ହେବ ହେ,
ଜଳାକରଭବନ-ବଳାମୁଖ ଭୁବନ,-ବଳାହିତ ଋତନ, ବଳାବରଜ, ଜନ-
କଳାପର ବୃଜିନ-ଦଳା ସୁକୃତଧନ-ବଳାଢ଼୍ୟମୁନି--ମନ-କଳାପି ଘନ ହେ ॥୪॥

କ୍ଷମାଧିପ ଜଗଦ୍ଦେବ ସମାପନ କରେ ହେ;
ଶ୍ରମାର୍ତ୍ତି ହେବାରୁ ଭବ ଭ୍ରମାନ୍ତିରଥେ ହେ,
ବ୍ୟଥା ନିବହ ହର, ପ୍ରଥାଚଳୁ ମିହିର, ପଥାନ୍ତରକୁ ହର-ରଥାଦରୁ ଅମର-
ମଥାମଣି ନିକର, ରଥାଙ୍ଗଯୁତ କର, କଥା ବିନୟ ମୋର ବୃଥା ନ କର ହେ ।୪।

---

ଜଳାକର ଭବନ—ସମୁଦ୍ର ଯାହାର ଜନ୍ମସ୍ଥାନ ଅର୍ଥାତ୍ ଚନ୍ଦ୍ର; ବଳାମୁଖ—ଚନ୍ଦ୍ରକୁ ବଳ ଯାଉଥିବା ମୁଖ (ଶ୍ରୀକୃଷ୍ଣଙ୍କର); ବଳାହିତ—ବଳାରି, ଇନ୍ଦ୍ର; ବଳାବରଜ—ବଳରାମଙ୍କ ସାନଭାଇ, ବୃଜିନଦଳା—ପାପ ବିନାଶକାରୀ, ଘନ—ମେଘ; କ୍ଷମାଧିପ—ପୃଥିବୀର ରାଜା; ହରରଥ—ପୃଥିବୀ ।

ଅନୁବାଦ—(କ୍ଷ) ଯାହାଙ୍କର ଅଙ୍ଗ କଳା କଜ୍ଜଳପରି ମନୋହର, ଲକ୍ଷ୍ମୀଙ୍କ ସହିତ ଋଷିମାନେ ଯାହାଙ୍କର ଚରଣାର୍ଚ୍ଚନା କରନ୍ତି, ଆଶ୍ରିତ ଲୋକମାନଙ୍କ ପକ୍ଷରେ ଯେ

(ଷ) ବଳିତାଞ୍ଜନପୁଞ୍ଜମଞ୍ଜୁଳାଙ୍ଗୋ, ଲଳିତାଦ୍ୟମୃଜାଲେଚନାର୍ଚ୍ଚିତାଂଘ୍ରିଃ,
ଫଳିତାମରଭୂରୁହଃ ଶ୍ରିତାନାଂ କଳିତାପଂ ଦଳୟିତ୍ବଳଂ କୃଷ୍ଣନାଂ ।
ଲୀଳାବନୀଭରମୁଖ୍ୟବିହୃତଖେରବାରୋଡ଼୍ଡୀନାଣ୍ଡଜେନ୍ଦ୍ରଚରମା
ଭରଣଂ ମହୋ ନଃ,
ଚୀନାନିଳାଲ୍ଲଚଳଦଞ୍ଚଳଚେଲମାଲଂ,
ହୀନାଂହସାମସୁମତାଂ ଶରଣଂ ଶରଣ୍ୟଂ ।
ପୀନାନୁକମ୍ପନରସାମୃତପୂରପୂର୍ଣ୍ଣୋ
ଦୀନାସ୍ୟନିଃସୃତତରସ୍ତବସକ୍ତକର୍ଣ୍ଣଃ,
ମୀନାଦ୍ୟନେକବିଧରୂପଧରଃ ପରାତ୍ମା
କୀନାଶକିଙ୍କରଭୟାନି ଜହାତୁ ।

ଶ୍ରୀମଦ୍‌ଭ୍ୟାମନ୍ୟୋଽନ୍ୟଲାବଣ୍ୟନୀଳଲୋଚନ ଭ୍ୟାମମ୍ବରାଡ଼ମ୍ବର-ବିଡ଼ମ୍ବିତାମ୍ବୁଧରରୋଚନାଭ୍ୟାଂ କାର୍ତ୍ତସ୍ୱରମସାରସାରସାଦୃଶ୍ୟପୂର୍ଣ୍ଣବର୍ଣ୍ଣାଭ୍ୟାଂ-ମାର୍ତ୍ତସ୍ୱରକର୍ଣ୍ଣନସକ୍ତକର୍ଣ୍ଣାଭ୍ୟାଂ ରକ୍ତାରବିନ୍ଦସୌନ୍ଦର୍ଯ୍ୟକୁନ୍ଦଲଚରଣାଭ୍ୟା-ମମାନୁଷାନୁଭବବିଭବାବ୍ୟାଂ ଶ୍ରୀରାଧାମାଧବାଭ୍ୟାଂ ନମୋନମଃ ।

ଇତି କିଶୋରଚନ୍ଦ୍ରାନନ୍ଦାଖ୍ୟଂ ଚମ୍ପୂକାବ୍ୟଂ ।

ଓଁ ତତ୍ ସତ୍ ।

---

ଫଳବାନ୍ କଳ୍ପପାଦପ ସଦୃଶ, ସେହି ଭଗବାନ ଶ୍ରୀକୃଷ୍ଣ ସାଧୁମାନଙ୍କର କଳିତାପକୁ ବିନାଶ କରନ୍ତୁ ।

ଯେ ଅବନୀର ଭାରଭୂତ ଅସୁରମାନଙ୍କୁ ବିନାଶ କରିଅଛନ୍ତି, ଯେ ପକ୍ଷୀରାଜ ଗରୁଡ଼ର ପୃଷ୍ଠଦେଶର ଆଭରଣସ୍ୱରୂପ, ଯାହାଙ୍କର ବସ୍ତ୍ରାଞ୍ଚଳ ଓ ମାଳା ମୃଦୁ ବାୟୁରେ ଆନ୍ଦୋଳିତ, ନିଷ୍ପାପ ପ୍ରାଣୀମାନଙ୍କର ଆଶ୍ରୟ ସେହି ସମୁଜ୍ଜ୍ୱଳ ତେଜ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ !

ଅନନ୍ତ ଦୟାରୂପ ଅମୃତରସରେ ଯେ ପରିପୂର୍ଣ୍ଣ, ଦୁଃଖୀର ମୁଖରୁ ବାହାରୁଥିବା ସ୍ତବକୁ ଶୁଣିବା ପାଇଁ ଯେ କାନ ଡେରି ଥାଆନ୍ତି, ମୀନାଦି ଅବତାର ଧାରଣକାରୀ ସେ ହରି ଯମକିଙ୍କରମାନଙ୍କ ଭୟ ଦୂର କରନ୍ତୁ !

ପରସ୍ପର ଲାବଣ୍ୟଦର୍ଶନରେ ଯାହାଙ୍କର ଲୋଚନ ସର୍ବଦା ଚଞ୍ଚଳ, ଯାହାଙ୍କର ପରିହିତ ବସ୍ତ୍ର ମେଘ ଓ ଗୋରଚନାର ବର୍ଣ୍ଣ ପରି ମନୋହର, ଯାହାଙ୍କ ଶରୀରଶୋଭା ସୁବର୍ଣ୍ଣ ଓ ଇନ୍ଦ୍ରନୀଳମଣି ପରି, ଦୁଃଖୀମାନଙ୍କର ଦୁଃଖ ଶୁଣିବାକୁ ଯେ ସବୁବେଳେ କାନ ଡେରି ଥାଆନ୍ତି, ଯାହାଙ୍କ ଶ୍ରୀଚରଣଶୋଭା ରକ୍ତ ପଦ୍ମ ପରି ମନୋଜ୍ଞ, ଅମାନୁଷତେଜଃସମ୍ପନ୍ନ ସେହି ରାଧ ମାଧବଙ୍କୁ ମୁଁ ନମସ୍କାର କରୁଅଛି ।

'କିଶୋରଚନ୍ଦ୍ରାନନ୍ଦ' ନାମକ ଚଂପୂକାବ୍ୟ ସମାପ୍ତ ।

ଓଁ

ସେହି ପରମ ବ୍ରହ୍ମ ହିଁ ଶରଣ !

---

# କବିସୂର୍ଯ୍ୟଙ୍କ ଦେଶ ଓ କାଳ

କବିସୂର୍ଯ୍ୟ ବଳଦେବ ରଥ ଆମ ସାହିତ୍ୟ-ଇତିହାସରେ ଏକ ଅବିସ୍ମରଣୀୟ ନାମ । ଭଞ୍ଜଯୁଗ ବା ରୀତି ଯୁଗରେ ତାଙ୍କର ଆବିର୍ଭାବ ହୋଇଥିଲା । ସେତେବେଳେ ଓଡ଼ିଶାରେ ମରହଟ୍ଟା ଶାସନ (୧୭୫୧ ମସିହାଠାରୁ) ପ୍ରଚଳିତ ଥିଲା । ମୋଗଲ ସମ୍ରାଟ ଔରଙ୍ଗଜେବଙ୍କର ମୃତ୍ୟୁ (୧୭୦୭) ପରେ ପରେ ଭାରତର ମୋଗଲ ସାମ୍ରାଜ୍ୟ ଭୁଷୁଡ଼ି ପଡ଼ିବାରେ ଲାଗିଲା ଏବଂ ମୋଗଲ ବାଦଶାହ ମହମ୍ମଦ ଶାହ (୧୭୧୯—୪୮)ଙ୍କ ସମୟକୁ ତାହା ନାମ ମାତ୍ରରେ ଅବଶିଷ୍ଟ ଥିଲା । ସେତେବେଳେ ଭାରତର ରାଜନୀତିକ ପୃଷ୍ଠପଟରେ ମରହଟ୍ଟା ଶକ୍ତି ଏବଂ ବିଦେଶୀ (ଇଉରୋପୀୟ ପର୍ତ୍ତୁଗୀଜ୍, ଇଂରେଜ ପ୍ରଭୃତି) ଶକ୍ତି ପ୍ରଭାବଶାଳୀ ହୋଇ ଉଠିଥିଲା । ୧୭୫୭ ମସିହାର ପଲାସୀ ଯୁଦ୍ଧ ପରେ ଇଂରେଜ ଶକ୍ତି ଭାରତରେ ପ୍ରଭାବ ବିସ୍ତାର କରିବାରେ ଲାଗିଲା ଏବଂ ମରହଟ୍ଟା ଶକ୍ତି ଦ୍ରୁତଗତିରେ ଦୁର୍ବଳ ହୋଇ ପଡ଼ିଲା । ଏହି ପୃଷ୍ଠଭୂମିକାରେ ଓଡ଼ିଶା କଥା ବିଚାର କଲେ, ଜଣାପଡ଼େ ଯେ—ଓଡ଼ିଶାରେ ମରହଟ୍ଟା ଶାସନ ବ୍ୟବସ୍ଥିତ ବା ସୁପ୍ରତିଷ୍ଠିତ ହୋଇ ପାରି ନ ଥିଲା । ପ୍ରାୟ ପଚାଶ ବର୍ଷର ମରହଟ୍ଟା ରାଜତ୍ୱ ଦେଢ଼ଶହ ବର୍ଷର ମୋଗଲ ରାଜତ୍ୱଠାରୁ ଅଧିକ କ୍ଷତି ଓ ଅମଙ୍ଗଳପ୍ରଦ ହୋଇ ପଡ଼ିଥିଲା କହିଲେ ଚଳେ । ରାଜ୍ୟର ସୁଶାସନ ପ୍ରତି ମରହଟ୍ଟା କର୍ତ୍ତୃପକ୍ଷ

ବିଶେଷ ଦୃଷ୍ଟି ଦେଇ ନ ଥିଲେ । ସେମାନେ ମୁଖ୍ୟତଃ ଏକ ଶୋଷକ, ଲୁଣ୍ଠନକାରୀ ଶାସକ ହିସାବରେ କାର୍ଯ୍ୟ କରିଥିଲେ । ପ୍ରଥମ ମରହଟ୍ଟା ସୁବାଦାର ଶିବରାମ ଭଟ୍ଟ ସାଠେ ( ୧୭୬୦-୬୪ ) ଙ୍କ ଅମଳରେ ଓଡ଼ିଶାରୁ ଆଦାୟ ହେଉଥିବା ପ୍ରାୟ ଏଗାର ଲକ୍ଷ ଟଙ୍କାର ରାଜସ୍ୱ ବଢ଼ି ବଢ଼ି ସୁବାଦାର ଶମ୍ଭୁଜୀ ଗଣେଶ (୧୭୬୮-୭୦) ଙ୍କ ଅମଳକୁ ପ୍ରାୟ ଷୋହଳ ଲକ୍ଷ ଟଙ୍କାରେ ପହଞ୍ଚି-ଥିଲା । ଅମାସ୍ ମଟ୍ ସାହେବ ଆପଣା 'ସମ୍ବଲପୁର ଯାତ୍ରା' (୧୭୬୬) ବିବରଣୀରେ ଉଲ୍ଲେଖ କରିଛନ୍ତି ଯେ—ଶତ୍ରୁ ରାଜ୍ୟ ଭଳି ଓଡ଼ିଶାର ବିଭିନ୍ନ ଜମିଦାରୀକୁ ମରହଟ୍ଟା ବାହିନୀ ଲୁଣ୍ଠନ କରିବା ଏକ ସାଧାରଣ ରୀତି ଥିଲା; ମରହଟ୍ଟା ବାହିନୀକୁ ଦେଖିବାମାତ୍ରେ ସେହି ଜମିଦାରୀର ପ୍ରଜାମାନେ ନିଜ ନିଜର ଗାଁ-ଗଣ୍ଡା ଛାଡ଼ି ପଳାଇ ଯାଉଥିଲେ । 'ବର୍ଗୀ ଆକ୍ରମଣ ବା ଲୁଣ୍ଠନ' ବିଷୟ ମରହଟ୍ଟା ଶାସନ ପରେ ମଧ୍ୟ ବହୁଦିନ ପର୍ଯ୍ୟନ୍ତ ଜାତିର ଅବଚେତନରେ ଜୀବନ୍ତ ହୋଇ ରହିଥିଲା । ମରହଟ୍ଟା ଶାସନର ଅଧିକାଂଶ କର୍ମଚାରୀ ଲାଞ୍ଚ ମିଛରେ ବୁଡ଼ି ରହିଥିଲେ । ଅଧିକନ୍ତୁ ବନ୍ୟା, ବାତ୍ୟା, ଦୁର୍ଭିକ୍ଷ ଆଦି ପ୍ରାକୃତିକ ଦୁର୍ଯୋଗ ଜାତିର ସାମାଜିକ-ଆର୍ଥନୀତିକ ଅବସ୍ଥାକୁ ଦୁର୍ବଳ କରି ପକାଇଥିଲା । ✻

ଏହି ପରିସ୍ଥିତିରେ କବିସୂର୍ଯ୍ୟ ବଳଦେବ ରାଜ୍ୟର ଯେଉଁ ଦକ୍ଷିଣାଞ୍ଚଳରେ ଆବିର୍ଭୂତ ହୋଇଥିଲେ, ତାହାର ରାଜନୀତିକ ଅବସ୍ଥା ସଂହତ ଓ ସମାହିତ ହୋଇ ନ ଥିଲା । ଖୁରୁଧା ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ(୧୭୨୭-୩୬)ଙ୍କ ଅମଳରେ ହାଇଦରାବାଦର ନିଜାମ୍ ଚିକାକୋଠାରୁ ଓଡ଼ିଶାର ଦକ୍ଷିଣାଂଶ ଅଧିକାର କରି ନେଇଥିଲେ । ତହିଁରେ ଆଠଗଡ଼, ଖଲ୍ଲିକୋଟ, ମହୁରୀ, ଚିକିଟି, ଧୁମୁସର ପ୍ରଭୃତି ଦକ୍ଷିଣ ଓଡ଼ିଶାର ଆଠଗୋଟି ଜମିଦାରୀ ରହିଥିଲା । ଏହି ଜମିଦାରୀ ସବୁ ଖୁରୁଧା ରାଜବଂଶର ପ୍ରଭୁତ୍ୱ ଏବଂ ଜଗନ୍ନାଥ ମନ୍ଦିରର ତତ୍ତ୍ୱାବଧାରକ ଭାବରେ 'ଠାକୁର ରାଜା'ଙ୍କ ମହତ୍ତ୍ୱ ସ୍ୱୀକାର କରୁଥିଲେ । କବିସୂର୍ଯ୍ୟଙ୍କ ଆବିର୍ଭାବ ବେଳକୁ ଖୁରୁଧା ରାଜ୍ୟର ସୀମା ଅତି ସଂକୀର୍ଣ୍ଣ ହୋଇ

---

✻ ଏ ସମ୍ପର୍କରେ ଡକ୍ଟର ହରେକୃଷ୍ଣ ମହତାବଙ୍କ 'ଓଡ଼ିଶା ଇତିହାସ' (୧୯୩), Orissa under Marathas by Dr. B. C. Ray (1960) ଏବଂ Utkal University History of Orissa, Vol. VI by P. Mukherjee (1964) ଦ୍ରଷ୍ଟବ୍ୟ ।

ପଡ଼ିଥିଲା । * ୧୮୦୩ ମସୀହା ଶେଷ ଭାଗରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପୂର୍ବରୁ ଗଞ୍ଜାମଠାରୁ ଓଡ଼ିଶାର ଦକ୍ଷିଣାଂଶ ଅଧିକାର କରି ନେଇଥିଲେ । ରାଜ୍ୟର ସେହି ଅଂଶ ସେତେବେଳେ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ଥିଲା । ତେଣୁ ଐତିହାସିକମାନଙ୍କ ମତରେ ଦକ୍ଷିଣ ଓଡ଼ିଶାର ସାମାଜିକ ଓ ଆର୍ଥନୀତିକ ଅବସ୍ଥା ଉତ୍ତର ଓଡ଼ିଶାର ସେହି ସେହି ଅବସ୍ଥାଠାରୁ ଅପେକ୍ଷାକୃତ କମ୍ ବିପର୍ଯ୍ୟସ୍ତ ହୋଇଥିଲା ।

ଇଂରେଜମାନଙ୍କ ଅଧିକାର ପୂର୍ବରୁ ଓଡ଼ିଶାର ଦାରୁଣ ଦୁର୍ଗତି ଓ ଦୁରବସ୍ଥାର କରୁଣ ଚିତ୍ର ଆମର ଐତିହାସିକମାନେ ଅଶ୍ରୁସିକ୍ତ ଲେଖନୀରେ ଲିପିବଦ୍ଧ କରି ଯାଇଛନ୍ତି । ତନ୍ମଧ୍ୟରୁ କେତେକାଂଶ ଏଠାରେ ଉଦ୍ଧାର କରାଗଲା—"ଓଡ଼ିଶାରେ ମରହଟ୍ଟାଙ୍କ ଶାସନ ସମୟକୁ ଅତ୍ୟାଚାର ଓ ଅରାଜକତାର ସମୟ ବୋଇଲେ ଅତ୍ୟୁକ୍ତି ହୁଅଇ ନାହିଁ । ଓଡ଼ିଆମାନେ ଅର୍ଦ୍ଧଶତ ବର୍ଷ ପୃଥିବୀକୁ ଘୋର ଦୁଃଖର କାହାଣୀ ଶୁଣେଇବା ପାଇଁ ମରହଟ୍ଟାଙ୍କ ନିଷ୍ଠୁର ଶାସନର ଅଧୀନ ହୋଇଥିଲେ । କେବଳ ଲୋକଙ୍କଠାରୁ ଅର୍ଥ ଶୋଷଣ କରିବା ମରହଟ୍ଟା ଶାସନର ଗୂଢ଼ ଉଦ୍ଦେଶ୍ୟ ଥିଲା । ଆଜି ଏକ ଗ୍ରାମ ମରହଟ୍ଟା ଅଶ୍ୱାରୋହୀମାନେ ଲୁଣ୍ଠନ କରୁଥିଲେ ତ କାଲି ସ୍ଥାନାନ୍ତରରୁ ସେମାନେ ସର୍ବସ୍ୱ ଅପହରଣ କରୁଥିଲେ । ସେମାନଙ୍କ ଶାସନକାଳରେ ଓଡ଼ିଶା ଏପରି ତନ୍ତ୍ର-ବିପର୍ଯ୍ୟୟ ଓ ବିଶୃଙ୍ଖଳ ଅବସ୍ଥାରେ ଅବସ୍ଥିତ ହୋଇଥିଲା ଯେ ସମାଜ-ବନ୍ଧନ ସ୍ଥିର ହୋଇ ରହିଥିବା ବିଷୟରେ କେହି କେହି ଅଦ୍ୟାବଧି ଆଶ୍ଚର୍ଯ୍ୟ ବୋଧ କରନ୍ତି । ଓଡ଼ିଶାର ବୃଦ୍ଧ ଲୋକଙ୍କ ନିକଟରୁ ବର୍ତ୍ତମାନ ଏପରି ଶୁଣାଯାଏ ଯେ ସପ୍ତାହ କାଳ ଏକ ହାଣ୍ଡିରେ ରନ୍ଧନ କରି ଖାଇବା ଓଡ଼ିଶାର ଗୃହସ୍ଥଲୋକଙ୍କ ପକ୍ଷରେ ଅସମ୍ଭବ ବିଷୟ ହୋଇଥିଲା । ମରହଟ୍ଟାଙ୍କ ଅତ୍ୟାଚାରରେ ଓଡ଼ିଶା ପ୍ରଜାଙ୍କୁ ଅନେକ ଥର ବନପର୍ବତ ଆଡ଼କୁ ପଳାଇ ଯିବା ପାଇଁ ବାଧ୍ୟ ହେବାକୁ ହୋଇଥିଲା ।"

—ଶ୍ରୀ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ 'ଓଡ଼ିଶାର ଇତିହାସ' (୧୯୨୫)ଗ୍ରନ୍ଥରୁ ।

"ମରହଟ୍ଟା ଶାସନରେ ନ୍ୟାୟବିଚାର, ଅଦାଲତ କି କାରାଗୃହ ନ ଥିଲା କହିଲେ ଚଳେ । ନ୍ୟାୟବିଚାର ଅର୍ଥର ଅଧୀନ ଥିଲା । ଚୋର ଧରା ପଡ଼ିଲେ,

---

* ଖୁରୁଧା ଇତିହାସ—ଶ୍ରୀ କେଦାରନାଥ ମହାପାତ୍ର, ଭୁବନେଶ୍ୱର (୧୯୬୯)—ପୃଷ୍ଠା ୮୭-୮୯

ସଙ୍ଗେ ସଙ୍ଗେ ଧରିବା ବ୍ୟକ୍ତି ଚୋରକୁ ଦଣ୍ଡ ଦେଉଥିଲେ । ଚୋର ଡକାୟତ ଦେଶରେ ପ୍ରବଳ ହୋଇଥିଲେ । ମରହଟ୍ଟା ସୈନ୍ୟମାନେ ଯେ-କୌଣସି ପଥିକକୁ ବାଟରେ ଲୁଣ୍ଠନ କରୁଥିଲେ । × × × ବର୍ଗୀ ଭୟରେ ଲୋକେ ସନ୍ତ୍ରସ୍ତ ହେଉଥିଲେ । ସେମାନଙ୍କ ଭୟରେ ଲୋକେ, ଭଲ ଖାଉ ନ ଥିଲେ, ଭଲ ପିନ୍ଧି ନ ଥିଲେ, କି ଭଲ ଘର କରି ରହୁ ନ ଥିଲେ । ଧନଦ୍ରବ୍ୟ ସବୁ ଲୋକେ ମାଟିରେ ପୋତି ରଖୁଥିଲେ । ବର୍ଗୀମାନେ ମଧ୍ୟ ମାଟିରେ ଶାବଳ ମାରି ଧନଦ୍ରବ୍ୟର ସନ୍ଧାନ କରୁଥିଲେ ।''

—ଶ୍ରୀ କୃପାସିନ୍ଧୁ ମିଶ୍ରଙ୍କ 'ଉତ୍କଳ ଇତିହାସ' (୧୯୩୩) ଗ୍ରନ୍ଥରୁ ।

''ଏହି ଦୀର୍ଘ କାଳ ଉତ୍କଳ ଜନନୀର ଉଦାର ବକ୍ଷ ଆଫଗାନ୍, ମୋଗଲ ଏବଂ ମରହଟ୍ଟା-ଅତ୍ୟାଚାର-ପ୍ରପୀଡ଼ିତ ହୋଇ ଲୋକମାନଙ୍କର ଦମ୍ଭ, ସାହସ, ବଳବୀର୍ଯ୍ୟ, ଧନ, ଧର୍ମ ପ୍ରଭୃତି ସମସ୍ତ ଜାତୀୟ ସମ୍ବଳଗୁଡ଼ିକ ଚୂର୍ଣ୍ଣୀଭୂତ ହୋଇଗଲା । ଦେଶରୁ ବାଣିଜ୍ୟ ବ୍ୟବସାୟ ଲୋପ ହେଲା । ଧର୍ମ ଚର୍ଚ୍ଚା ଲୋପ ହେଲା । କଳାବିଦ୍ୟା ଲୋପ ହେଲା । କୃଷି ହୀନ ହେଲା । ଚତୁର୍ଦ୍ଦିଗରୁ ଅବନତି-ସ୍ରୋତ ପ୍ରବଳ ବେଗରେ ମାଡ଼ି ଆସି ଓଡ଼ିଶାକୁ ଗ୍ରାସ କରି ପକାଇଲା । × × × ଉତ୍କଳର ଅଙ୍ଗ ପ୍ରତ୍ୟଙ୍ଗ ଖଣ୍ଡ ଖଣ୍ଡ ହୋଇ ଛେଦିତ ହେଲା । ଗୋଟାଏ ଜାତି ଉପରେ ଏତେ ପ୍ରକାର ଅତ୍ୟାଚାର ହେଲେ, ତା ପକ୍ଷରେ ବଞ୍ଚିକରି ରହିବା ଅସମ୍ଭବ ହେବା ସ୍ୱାଭାବିକ । ଆଜି ଯେ ଓଡ଼ିଆ ଜାତି ବଞ୍ଚି ରହିଛି, ଏହା ହିଁ ଆଶ୍ଚର୍ଯ୍ୟଜନକ କଥା ।''

—ଶ୍ରୀ ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ' (୧୯୨୯) ଗ୍ରନ୍ଥରୁ ।

ଇଂରେଜମାନଙ୍କ ଓଡ଼ିଶା ଅଧିକାର ପରେ ପରେ ଯେ ସହସା ଏହି ଅବସ୍ଥାର ଉନ୍ନତି ସାଧିତ ହୋଇଗଲା, ତାହା ନୁହେଁ । ଜାତୀୟ ଜୀବନର ଚରମ ବିପର୍ଯ୍ୟୟରୁ ଉଠି ଓଡ଼ିଆମାନଙ୍କୁ ଅଣ୍ଟା ସଳଖି ଠିଆ ହେବା ପାଇଁ ଆହୁରି ଅନ୍ତତଃ ଏକ ଶତ ବର୍ଷ ଲାଗିଗଲା । ଓଡ଼ିଶାର ସାମାଜିକ, ଆର୍ଥନୀତିକ କ୍ଷେତ୍ରରେ ଏହି କାଳଟି ହେଉଛି—ଗୋଟିଏ ଯୁଗସନ୍ଧି । ଇଂରେଜ ଶାସନରେ ମଧ୍ୟ ଓଡ଼ିଶା ଉପରେ ଆର୍ଥନୀତିକ ଶୋଷଣ ବନ୍ଦ ହେଲା ନାହିଁ; ଉତ୍କଳୀୟ ସାମରିକ ଶକ୍ତିକୁ ଆହୁରି ଦୁର୍ବଳ କରି ଦିଆଗଲା ; ସାମାଜିକ ଜୀବନ ଭ୍ରଷ୍ଟ, କଳୁଷିତ ହୋଇପଡ଼ିଲା । ତତ୍କାଳୀନ ଜାତୀୟ ଚରିତ୍ରର ଅପ୍ରୀତିକର ଚିତ୍ର ପ୍ରଦାନ କରି ୧୮୨୨ ମସିହାରେ ଷ୍ଟାର୍ଲିଙ୍ଗ୍ ସାହେବ ଲେଖିଛନ୍ତି—"ଗୋଟିଏ

ଜାତି ହିସାବରେ ଓଡ଼ିଆମାନେ ବଡ଼ ମାଈଚିଆ ବୋଲି ଆବୁଲ ଫାଜଲ ଯଥାର୍ଥ ବର୍ଣ୍ଣନା କରିଛନ୍ତି । ପ୍ରକୃତରେ, ଓଡ଼ିଆମାନଙ୍କର ପୁରୁଷପଣିଆ ଏକବାରେ ନାହିଁ । × × ସେମାନେ ବୁଦ୍ଧି ମେଧାର ଅଜ୍ଞ, ସେହିପରି ନିର୍ବୋଧ । ଅନ୍ୟ ପ୍ରଦେଶ ଲୋକଙ୍କ ତୁଳନାରେ ଓଡ଼ିଶାବାସୀଙ୍କର ବୌଦ୍ଧିକ ବିକାଶ ହୋଇ ନାହିଁ । ଏହି ଦୃଷ୍ଟିରୁ ଓଡ଼ିଶାକୁ 'ଭାରତର ବୋଏସିଆ' * ଆଖ୍ୟା ଦିଆଯାଇପାରେ । ଏପରି ବିଚାରର ଏକ ଉଲ୍ଲେଖଯୋଗ୍ୟ ପ୍ରମାଣ ହେଉଛି— ଓଡ଼ିଶା ରାଜତନ୍ତ୍ରର ପତନଠାରୁ ସବୁ ଯୁଗରେ ଏବଂ ସମସ୍ତ ସରକାର ଅଧୀନରେ ସମଗ୍ର ପ୍ରଦେଶର ପ୍ରଧାନ ପ୍ରଧାନ ସରକାରୀ ଚାକିରିଗୁଡ଼ିକ ବିଦେଶୀମାନେ ଏକଚାଟିଆ କରି ନେଉଛନ୍ତି; ବିଦେଶୀ ବୋଇଲେ ଉତ୍ତରରୁ ବଙ୍ଗାଳୀ ଓ ଚଳିକା ଦକ୍ଷିଣରୁ ତେଲଙ୍ଗା । ଏହାର କାରଣ, ସୁବିଧା-ଅସୁବିଧାରେ ନିର୍ଭରଯୋଗ୍ୟ ହେଲା ଭଳି ଉପଯୁକ୍ତ ଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ଓଡ଼ିଆମାନଙ୍କ ଭିତରୁ ମିଳିବା କଷ୍ଟକର । ଜନସାଧାରଣ ନିଜର ମାଈଚିଆ ସ୍ୱଭାବ ଯୋଗୁ କୌଣସି ଦୁଃସାହସିକ ଓ ଘୃଣ୍ୟ ଧରଣର ଅପରାଧ କରିବାରେ ଅଭ୍ୟସ୍ତ ନୁହଁନ୍ତି । କିନ୍ତୁ କ୍ଷୁଦ୍ର କ୍ଷୁଦ୍ର କଳିଗୋଳ, ଭଣ୍ଡାମି, ବଦମାସି ଆଦି ଗୁଣରେ ସେମାନେ ବେଶ୍ ଧୁରନ୍ଧର । × × × ଅଳ୍ପ ଉଦ୍ୟମଶୀଳ ଓ ହୀନବୁଦ୍ଧିସମ୍ପନ୍ନ ହେଲେ ମଧ୍ୟ କର୍ମକ୍ଷେତ୍ରରେ ରଯୁତମାନେ ବଡ଼ ପରିଶ୍ରମୀ । ଦୋଷ ଯାହା ଥାଉ ପଛକେ, ସମତଳ ଅଞ୍ଚଳର ଓଡ଼ିଆମାନେ ପ୍ରକୃତରେ ଖୁବ୍ ନିରୀହ, ଶାନ୍ତ, ମେଳାପୀ ଏବଂ କମ୍ପାନୀ-ଅଧିକୃତ ପ୍ରଦେଶମାନଙ୍କରେ ଭଲ ପୋଷ-ମାନିବା ଜାତି । ସେମାନେ ମଧ୍ୟ ମୂଲ୍ୟବାନ୍ ଚାକର-ଶ୍ରେଣୀ ପାଇଁ ଉପଯୁକ୍ତ । ଓଡ଼ିଆ ଚାକରଙ୍କଠାରେ ସାଧୁତା ଓ ପ୍ରଭୁପରାୟଣତା (ଅବଶ୍ୟ ଏ ଗୁଣଗୁଡ଼ିକ ବିଷୟରେ ସେମାନଙ୍କର ଯାହା ଧାରଣା) ସ୍ପଷ୍ଟ ଦେଖିବାକୁ ମିଳେ ।"

---

* ଏହି ଆଲୋଚକର ଟିପ୍ପଣୀ—ଭାରତର ବୋଏସିଆ (Boeotia of India): ବୋଏସିଆ ମଧ୍ୟ ଗ୍ରୀସ୍‌ର ଗୋଟିଏ ଜିଲ୍ଲା । ବୋଏସିଆର ଜଳବାୟୁ ଖରାପ ବୋଲି ପ୍ରବାଦ । ବୋଏସୀୟମାନେ ମଧ୍ୟ ମୂର୍ଖ ଓ ନିର୍ବୋଧ । ତଥାପି ସେଠାରେ ପିଣ୍ଡାର୍, ପ୍ଲୁଟାର୍କ୍‌ଙ୍କ ଭଳି ଲୋକ ଜନ୍ମିଥିଲେ । ମାତ୍ର ଓଡ଼ିଶାରେ ସେପରି କୌଣସି ପୁରୁଷ ଜନ୍ମିଥିବାର ଷ୍ଟାର୍ଲିଙ୍ଗ୍ ସାହେବ ବୋଧହୁଏ ଲକ୍ଷ୍ୟକରି ପାରିଲେ ନାହିଁ ।

ଏହା କଳ୍ପିତ 'ରୂପକ' ଅତି-କଥନ ବା ବିଶେଷ-କଥନ ହେଲେ ମଧ୍ଯ ଏଥିରେ ଥିବା କେତେକ ଅପ୍ରିୟ ସତ୍ୟ ଅସ୍ୱୀକାର କରି ହେବ ନାହିଁ । ଏକ ଯୁଗସନ୍ଧି କାଳରେ ଏହା ଗୋଟିଏ ଜାତିର ବିପର୍ଯ୍ୟୟର ମୋଟାମୋଟି ଚିତ୍ର । ବେଳେ ବେଳେ ଦେଖାଯାଏ—ସମାଜ-ଜୀବନର ଅଧୋଗତି ବା ବିପର୍ଯ୍ୟୟ ସମୟରେ କୌଣସି କୌଣସି ଜାତି, ଧର୍ମ ଓ ଭକ୍ତିଭାବର ବିଭିଭୟ ଲୋଡ଼ିଥାଏ —ଦେବଦେବୀଙ୍କର ବାହୁଚ୍ଛାୟା ତଳେ ନିରାପଦ ଆଶ୍ରୟ ଖୋଜିଥାଏ । ଏକ ପ୍ରକାର ଆଧ୍ୟାତ୍ମିକ ସାନ୍ତ୍ୱନା-ଲାଭ ମଧ୍ୟରେ ସେ ଯେପରି ନିଜ ଅଧୋଗତିର ଗ୍ଳାନି ପାସୋରି ଦେବାକୁ ଚେଷ୍ଟା କରେ ! ଓଡ଼ିଆ ଜାତି ପକ୍ଷରେ ସେତେବେଳେ ତାହା ହିଁ ଘଟିଲା । ବୈଷ୍ଣବ ଧର୍ମର ସୁପ୍ରସାର ମଧ୍ୟରେ ଜାତିର ଜୀବନ-ଶକ୍ତି ଦୁର୍ବଳ ହୋଇ ପଡ଼ିଲା । କିନ୍ତୁ ମରହଟ୍ଟା ଜାତି ପକ୍ଷରେ ଏବଂ ପଶ୍ଚିମ ଏସିଆର ଆରବ ଜାତି ପକ୍ଷରେ ତାହା ଘଟି ନ ଥିଲା । ତୁକାରାମ ଓ ରାମଦାସଙ୍କ ପରି ଭକ୍ତ ସନ୍ନ୍ୟାସୀମାନେ ମରହଟ୍ଟା ଜାତିକୁ ଶକ୍ତିଶାଳୀ କରିବାଲାଗି ଉଦ୍‌ବୁଦ୍ଧ କରିଥିଲେ; ଇସଲାମ୍ ଧର୍ମ ସେହିପରି ଆରବ-ଜାତି ପ୍ରାଣରେ ପ୍ରଚଣ୍ଡ ଜୀବନଶକ୍ତି ସଞ୍ଚାର କରାଇ ପାରିଥିଲା । ଇତିହାସର ଏହା ଏକପ୍ରକାର ଅସାମଞ୍ଜସ୍ୟ ବୋଲି ଡକ୍ଟର ମାୟାଧର ମାନସିଂହ ନିଜର ଏକ ପ୍ରସିଦ୍ଧ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି । * ବୈଷ୍ଣବ ଧର୍ମର ସୁପ୍ରସାର କିନ୍ତୁ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ସାହାଯ୍ୟ କରିଛି—ଏ କଥା ଅସ୍ୱୀକାର କରି ହେବ ନାହିଁ । କବିସୂର୍ଯ୍ୟ ବଳଦେବ ଓଡ଼ିଶାର ଏହି ଯୁଗସନ୍ଧି କାଳରେ ସାହିତ୍ୟ-ସାଧନା କରିଥିବାରୁ ତାଙ୍କର ରଚନାବଳୀରେ ଉକ୍ତ ଧର୍ମୀୟ ପ୍ରଭାବ ପ୍ରତିଫଳିତ ହେବା ସ୍ୱାଭାବିକ—ସାମାଜିକ ଓ ରାଜନୀତିକ ପରିବେଶର ଛାପ ଅପରିହାର୍ଯ୍ୟ ।

## ଗୀତ-ସାହିତ୍ୟ ଧାରା

ସେତେବେଳେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଉତ୍କଳୀୟ କବିକୁଳର ଆଦର୍ଶ ସ୍ଥାନୀୟ ହୋଇ ରହିଥିଲେ ଏବଂ ଓଡ଼ିଆ ସାହିତ୍ୟରେ ମୁଖ୍ୟତଃ ରୀତିଧାରା ଅନୁସୃତ ହେଉଥିଲା । ମରହଟ୍ଟା ତଥା ତତ୍‌ପୂର୍ବବର୍ତ୍ତୀ ମୋଗଲ ଶାସକମାନେ ଏହି ସାହିତ୍ୟର ସମୃଦ୍ଧି ପାଇଁ କୌଣସି ଉଲ୍ଲେଖଯୋଗ୍ୟ

* ଓଡ଼ିଆ ସମାଜ ଓ ସାହିତ୍ୟ—ଡକ୍ଟର ମାୟାଧର ମାନସିଂହ, ଭାରତୀ ଭଣ୍ଡାର, କଟକ (୧୯୫୧)—ପୃଷ୍ଠା ୧୩୬-୪୩

କାର୍ଯ୍ୟ କରି ନ ଥିଲେ । ବରଂ ରାଜ୍ୟର ତତ୍‌କାଳୀନ ସାମନ୍ତ ରାଜା ଓ ଜମିଦାରମାନଙ୍କ ପୃଷ୍ଠପୋଷକତାରେ ସେତେବେଳେ ଜାତୀୟ ସାହିତ୍ୟର ଅଭିବୃଦ୍ଧି ସାଧିତ ହୋଇଥିଲା । ଏହି ପୃଷ୍ଠପୋଷକମାନଙ୍କର ଅଭିରୁଚିକୁ ଚାହିଁ, ଅନେକ ସମୟରେ କବିମାନେ କାବ୍ୟକବିତା ରଚନା କରୁଥିଲେ । ତେଣୁ ତତ୍‌କାଳୀନ ଅଧିକାଂଶ ସାହିତ୍ୟ-ସୃଷ୍ଟି ଧନାଢ୍ୟ ପୃଷ୍ଠପୋଷକମାନଙ୍କର ଅବସର-ବିନୋଦନ ବା ବିଳାସ-ବ୍ୟସନର ଉପାଦାନ ରୂପେ ପ୍ରକାଶ ପାଇଥିଲା । ଖୁର୍ଦ୍ଧା, ଧୁମୁସର, ପାରଳାଖେମୁଣ୍ଡି, ବଡ଼ଖେମୁଣ୍ଡି, ଚିକିଟି, ଜଳନ୍ତର, ଖଡ଼ିଆଳ, ସୋନପୁର, ବାମଣ୍ଡା, ଢେଙ୍କାନାଳ, କେଉଁଝର, ମୟୂରଭଞ୍ଜ, ରଣପୁର, ବାଣପୁର, ଆଠଗଡ଼, ଖଲ୍ଲିକୋଟ ପ୍ରଭୃତିର ରାଜା-ଜମିଦାରମାନେ ଏହି ପୃଷ୍ଠପୋଷକ ରୂପେ ସେତେବେଳେ କାର୍ଯ୍ୟ କରିଥିଲେ ।

ରୀତି ସାହିତ୍ୟ ଆଙ୍ଗିକ-ପ୍ରଧାନ ସାହିତ୍ୟ । 'ବିଶିଷ୍ଟ ପଦ ରଚନା' ଅର୍ଥାତ୍ ସୁନ୍ଦର ରଚନା ଶୈଳୀ ଉପରେ ଏହା ଗୁରୁତ୍ୱ ଦେଇଥାଏ । ତଥାପି ସାହିତ୍ୟର ଆତ୍ମାଠାରୁ ଏହା ପୂରାପୂରି ବିଚ୍ଛିନ୍ନ ନୁହେଁ । ସାହିତ୍ୟର ବିଷୟବସ୍ତୁ ସହିତ ସମନ୍ୱିତ ବିଶେଷ ବିଶେଷ ଗୁଣାତ୍ମକ ରଚନା ଶୈଳୀକୁ ସଂସ୍କୃତ ଆଳଙ୍କାରିକମାନେ 'ରୀତି' ବୋଲି କହିଛନ୍ତି । *

ପୂର୍ବରୁ ଆଚାର୍ଯ୍ୟ ଦଣ୍ଡୀ (ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ) ଆପଣା ଅଳଙ୍କାର-ଶାସ୍ତ୍ର 'କାବ୍ୟାଦର୍ଶ'ରେ ରୀତି ଓ ଗୁଣ ବିଷୟ ଆଲୋଚନା କରିଥିଲେ ହେଁ ଅଷ୍ଟମ ଶତାବ୍ଦୀର ଆଳଙ୍କାରିକ ଆଚାର୍ଯ୍ୟ ବାମନ ରୀତି ପ୍ରସ୍ଥାନର ପ୍ରତିଷ୍ଠାତା ରୂପେ ବିହିତ ହୋଇଛନ୍ତି ।

'ବିଶେଷ ଗୁଣାତ୍ମା' କଥାଟିର ତାତ୍ପର୍ଯ୍ୟ ଅଛି । ଗୁଣ ରସର ଉତ୍କର୍ଷ ସାଧନ କରିଥାଏ । ତେଣୁ ସାହିତ୍ୟର ଆତ୍ମା ସହିତ ଏହାର ସମ୍ପର୍କ ରହିଛି । ଗୁଣ ସାହିତ୍ୟର ନିତ୍ୟ ଓ ସ୍ଥିର ଧର୍ମ, କିନ୍ତୁ ଉପମା-ଯମକାଦି ଅଳଙ୍କାର ଅସ୍ଥିର ଧର୍ମ । ଆଚାର୍ଯ୍ୟ ଦଣ୍ଡୀ ଏହି ଗୁଣାତ୍ମକ ରୀତି ଓ ଅଳଙ୍କାର ମଧ୍ୟରେ ଥିବା ପାର୍ଥକ୍ୟ ନିର୍ଦ୍ଦିଷ୍ଟ କରି ପାରି ନାହାନ୍ତି । ଓଜଃ, ପ୍ରସାଦ, ମାଧୁର୍ଯ୍ୟ, ଉଦାରତା, କାନ୍ତି, ଅର୍ଥବ୍ୟକ୍ତି ଆଦି ଦଶ ପ୍ରକାର ଗୁଣ ବିଷୟ ସଂସ୍କୃତ

---

* "ରୀତିରାତ୍ମା କାବ୍ୟସ୍ୟ । ବିଶିଷ୍ଟା ପଦରଚନା ରୀତିଃ । ବିଶେଷୋ ଗୁଣାତ୍ମା । ସା ତ୍ରେଧା ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଲୀ ଚେତି ।"

— କାବ୍ୟାଳଙ୍କାର ସୂତ୍ର : ଆଚାର୍ଯ୍ୟ ବାମନ

ଅଳଙ୍କାର-ଶାସ୍ତ୍ରମାନଙ୍କରେ ଉଲ୍ଲେଖ କରାଯାଇଛି । ଭିନ୍ନ ଭିନ୍ନ ଗୁଣକୁ ଅବଲମ୍ବନ କରି ବିଭିନ୍ନ ରୀତି ପ୍ରକାଶ ପାଇଥାଏ । ପୁଣି କବିଙ୍କର ଶିକ୍ଷାଦୀକ୍ଷା, ବ୍ୟକ୍ତିତ୍ୱ ଓ ଭୌଗୋଳିକ ପରିସ୍ଥିତି ଅନୁଯାୟୀ ରୀତିର ସ୍ୱାତନ୍ତ୍ର୍ୟ ପ୍ରକଟିତ ହୋଇଥାଏ । ସଂସ୍କୃତ ସାହିତ୍ୟରେ ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ, ଲାଟୀ ବା ଲାଟିୟା, ମାଗଧୀ, ଆବନ୍ତୀ ପ୍ରଭୃତି ରୀତି ବିଷୟ ଉଲ୍ଲେଖ କରାଯାଇଛି ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀଠାରୁ—ବିଶେଷତଃ ସପ୍ତଦଶ ଶତାବ୍ଦୀ ଶେଷ ଭାଗରୁ ଅର୍ଥାତ୍ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ସମୟରୁ ଏହି ରୀତି ସାହିତ୍ୟ ଧାରାରେ ବହୁ କାବ୍ୟ କବିତା ଆମର ମାତୃଭାଷାରେ ରଚିତ ହୋଇ ଆସିଛି । ଓଡ଼ିଆ ରୀତି ସାହିତ୍ୟର ଗୋଟିଏ ବିଶେଷତ୍ୱ ହେଉଛି—ରୀତି ସହିତ-ଅଳଙ୍କାରର ସମନ୍ୱୟ । ଧନଞ୍ଜୟ, ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, କବିସୂର୍ଯ୍ୟ ବଳଦେବ ପ୍ରମୁଖ ନିଜ ନିଜ ସାହିତ୍ୟ-ସୃଷ୍ଟିରେ ଉଣାଧିକେ ରୀତିବାଦ ଓ ଅଳଙ୍କାରବାଦର ସମବାୟ ସ୍ଥାପନ କରିଛନ୍ତି । ଭାରତୀୟ ଅନ୍ୟାନ୍ୟ ଭାଷାରେ— ବିଶେଷତଃ ତେଲୁଗୁ ଭାଷାରେ ପ୍ରାୟ ସମକାଳରେ ଏହି ପ୍ରକାର ଅଭିମୁଖ୍ୟ ଘେନି ସାହିତ୍ୟ ସୃଷ୍ଟି (ପ୍ରବନ୍ଧ କାବ୍ୟ) ହୋଇଥିବାର ଦେଖାଯାଏ । ତେଲୁଗୁ ଭାଷାଭାଷୀ ଅଞ୍ଚଳକୁ ଦକ୍ଷିଣ ଓଡ଼ିଶା ଲାଗି ରହିଥିବା ବିଷୟ ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ପୁଣି ସମୀକ୍ଷକ ଶ୍ରୀ ସୁରେନ୍ଦ୍ର ମହାନ୍ତି ମଧ୍ୟଯୁଗର ଇଉରୋପୀୟ 'ତ୍ରୁବାଦୁର୍' (Troubadour—ଏହାର ଅନ୍ୟାନ୍ୟ ଆଞ୍ଚଳିକ ନାମ 'ତ୍ରୁଭେରେ' Trouvere ଏବଂ 'ମିନେସିଞ୍ଜର୍' Minnesinger) କବିଗଣଙ୍କ କାବ୍ୟକବିତା ସହିତ ଭାରତୀୟ ରୀତି-ଆଳଙ୍କାରିକ ସାହିତ୍ୟର ସାମଞ୍ଜସ୍ୟ ଥିବା ବିଷୟ ସୂଚାଇଛନ୍ତି । *

ଓଡ଼ିଆ ରୀତି ସାହିତ୍ୟର ପ୍ରଧାନ ପ୍ରଧାନ ସାଧାରଣ ଲକ୍ଷଣଗୁଡ଼ିକ ନିମ୍ନମତେ ନିର୍ଦ୍ଦେଶ କରାଯାଇ ପାରେ:—

(୧) ସଂସ୍କୃତ ଅଳଙ୍କାରଶାସ୍ତ୍ରର ରୀତି ପ୍ରସ୍ଥାନ ଓ ଅଳଙ୍କାର ପ୍ରସ୍ଥାନ ଆଦର୍ଶରେ କାବ୍ୟକବିତା ସମୂହ ରଚନା । ଫଳରେ ରଚନା ଶୈଳୀରେ ଶବ୍ଦାଡ଼ମ୍ବର, ବିଭିନ୍ନ ଶବ୍ଦାଳଙ୍କାର ଅର୍ଥାଳଙ୍କାର ଆଦି ପ୍ରକାଶିତ ହେଲା ।

(୨) କବିତ୍ୱ ସହିତ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତାର ସମନ୍ୱୟ ସାଧନ ।

---

* ଓଡ଼ିଆ ସାହିତ୍ୟର ମଧ୍ୟପର୍ବ—କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର (୧୯୬୭)—ପ୍ରଥମ ପରିଚ୍ଛେଦ ଦ୍ରଷ୍ଟବ୍ୟ ।

ଏହି ଦୁଇଟି ଲକ୍ଷଣ ହେତୁ ଅର୍ଥାତ୍ ଶାବ୍ଦିକତା, ଆଳଙ୍କାରିକତା ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତା ପ୍ରଭୃତିର ସମାବେଶ ଯୋଗୁ ସାହିତ୍ୟ ଅନେକ ପରିମାଣରେ କ୍ଲିଷ୍ଟ ଏବଂ ଦୁର୍ବୋଧ ହୋଇ ପଡ଼ିଲା ।

(୩) ଧର୍ମୀୟ ଓ ପୌରାଣିକ ବିଷୟବସ୍ତୁ ସଙ୍ଗେ ସଙ୍ଗେ କାବ୍ୟକବିତାରେ ଲୌକିକ ଓ ସାମାଜିକ ବିଷୟବସ୍ତୁ ଗ୍ରହଣ ।

(୪) କାବ୍ୟ କବିତାରେ ବିଭିନ୍ନ ରସର ଉଦ୍‌ବୋଧନ ପାଇଁ ପ୍ରୟାସ; ତନ୍ମଧ୍ୟରୁ ଶୃଙ୍ଗାର ରସର ଉଦ୍‌ବୋଧନ ଲାଗି କବିମାନେ ବିଶେଷ ଧ୍ୟାନ ଦେଲେ ।

(୫) କାବ୍ୟ କବିତାର ବିଷୟବସ୍ତୁ-ବିନ୍ୟାସ ଓ ଘଟଣା-ବର୍ଣ୍ଣନରେ ବୈଚିତ୍ର୍ୟହୀନତା । ଅର୍ଥାତ୍ ସାହିତ୍ୟର ବିଷୟବସ୍ତୁ ବିବିଧ ଓ ବହୁମୁଖୀନ ହେଲା ନାହିଁ ଏବଂ ସାଧାରଣତଃ ଏକ ଧରାବନ୍ଧା ନିର୍ଦ୍ଦିଷ୍ଟ ଛାଞ୍ଚରେ ତାହା ବିନ୍ୟସ୍ତ କରାଗଲା ।

(୬) କାବ୍ୟ କବିତାରେ ସାଙ୍ଗୀତିକ ଛନ୍ଦ ପ୍ରୟୋଗ । ଭାବୋପଯୋଗୀ ରାଗ-ରାଗିଣୀରେ ସାହିତ୍ୟ ସୃଷ୍ଟି ହେଲା ।

ଏହି ରୀତି ସାହିତ୍ୟ-ଧାରାରେ ଲେଖମା ତୁଳନା କରିଥିଲେ ହେଁ କବିସୂର୍ଯ୍ୟ ବଳଦେବ ସେଯୁଗର ଭଞ୍ଜ ପ୍ରମୁଖ ଆଉ ଆଉ କବିମାନଙ୍କଠାରୁ କେତେକ ସ୍ୱାତନ୍ତ୍ର୍ୟ ରକ୍ଷା କରି ପାରିଛନ୍ତି । ଶବ୍ଦାଡ଼ମ୍ବର ଓ ବିଭିନ୍ନ ଅଳଙ୍କାରସମାବେଶ ଟିକିଏ ଊଣା ହୋଇଥିବାରୁ ତାଙ୍କର ସାହିତ୍ୟ ସୃଷ୍ଟି ଅପେକ୍ଷାକୃତ କମ୍ କ୍ଲିଷ୍ଟ ଓ ଦୁର୍ବୋଧ ହୋଇଛି । ଭଞ୍ଜ, ଅଭିମନ୍ୟୁ ପ୍ରମୁଖ ଥିଲେ ମୁଖ୍ୟତଃ ଛାନ୍ଦକାବ୍ୟର କବି, କିନ୍ତୁ କବିସୂର୍ଯ୍ୟ ମୁଖ୍ୟତଃ ଚଉପଦୀ କବିତାର କବି; ଏପରି କି ତାଙ୍କର 'କିଶୋରଚନ୍ଦ୍ରାନନ୍ଦଚମ୍ପୂ' କାବ୍ୟର ପ୍ରତ୍ୟେକ ସଙ୍ଗୀତ ଗୋଟିଏ ଗୋଟିଏ ଉଚ୍ଚକୋଟୀର ଚଉପଦୀ କବିତା ରୂପେ ଗୃହୀତ ହୋଇଥାଏ ଏବଂ ସେହି ଭାବରେ ଅଦ୍ୟାବଧି ଗାନ କରା ଯାଉଥିବାର ଦେଖାଯାଏ । କାବ୍ୟକବିତାର ବିଷୟବସ୍ତୁ-ବିନ୍ୟାସ ଓ ଘଟଣା-ବର୍ଣ୍ଣନରେ କବିସୂର୍ଯ୍ୟଙ୍କର ବିଶେଷତ୍ୱ ସୁପ୍ରକଟ । ଏ କ୍ଷେତ୍ରରେ ସେ ନିଶ୍ଚିତ ଭାବେ ବୈଚିତ୍ର୍ୟ ସମ୍ପାଦନରେ ସମର୍ଥ ହୋଇଛନ୍ତି । ତାଙ୍କର କିଶୋରଚନ୍ଦ୍ରାନନ୍ଦ ଚମ୍ପୂ, ପ୍ରିୟ ସହି କରିବି କି ବୁଦ୍ଧି ଗୋ ଗଲାଣି ମୁଁ ଲାଜେ ସଢ଼ି କେଉଁ ଗୁଣେ ରସି ନିକୁଞ୍ଜ ବିଳାସୀ ମୋ ସ୍ନେହେ ଅଛନ୍ତି ବୁଡ଼ି, ଜଗତେ କେବଳେ ଜନ ହସିବେ ଏହି ତହିଁ

*

ଫଳ, କାହାକୁ ଅଢ଼ିବା କପାଳରେ ସିନା କର ଛାଡ଼ିବା ପ୍ରଭୃତି ରଚନାରୁ ଏହାର ପ୍ରମାଣ ମିଳେ ।

## କବି-ଜୀବନୀ ଓ ସାହିତ୍ୟ-ସାଧନା

ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଅଷ୍ଟମ-ନବମ ଦଶକ ମଧ୍ୟରେ କବିସୂର୍ଯ୍ୟ ବଳଦେବ ରଥ ଜନ୍ମଗ୍ରହଣ କରିଥିଲେ ଏବଂ ଊନବିଂଶ ଶତାବ୍ଦୀର ପଞ୍ଚମ ଦଶକ ମଧ୍ୟରେ ଗତାସୁ ହୋଇଥିଲେ । ତାଙ୍କର ନିର୍ଦ୍ଦିଷ୍ଟ ଜନ୍ମ-ମସୀହା ଓ ମୃତ୍ୟୁ ମସିହା ସମ୍ପର୍କରେ ପଣ୍ଡିତମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଯାଏ । 'କବିସୂର୍ଯ୍ୟ ଗ୍ରନ୍ଥାବଳୀ'ର ବିଜ୍ଞ ସମ୍ପାଦକ ପଣ୍ଡିତ କୁଳମଣି ଦାସ ବଳଦେବଙ୍କ କାଳ ୧୭୮୯-୧୮୪୫ ମସିହା ବୋଲି ନିରୂପଣ କରିଥିବା ବେଳେ ଗବେଷକ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ତାହାକୁ ୧୭୭୯-୧୮୪୦ ମସିହା ବୋଲି ଗ୍ରହଣ କରିଛନ୍ତି । ✳

ପ୍ରାଚୀନ ଯୁଗରେ ଆବିର୍ଭୂତ ହୋଇ କବିସୂର୍ଯ୍ୟ ଆଧୁନିକ ଯୁଗରେ ବା ଇଂରେଜ ରାଜତ୍ୱରେ ପ୍ରାୟ ତ୍ରିଶ ବର୍ଷକାଳ ଜୀବନ ନିର୍ବାହ କରିଥିଲେ । ଏହି ଇଂରେଜ ରାଜତ୍ୱରେ ମୁଖ୍ୟତଃ ତାଙ୍କର ସାହିତ୍ୟ-ସାଧନା ପରିଚାଳିତ ହୋଇଥିଲା । ତଥାପି ତାଙ୍କୁ ପୂରାପୂରି ଆଧୁନିକ ଯୁଗର କବି ବୋଲି ଅଭିହିତ କରିହେବ ନାହିଁ । କବିବର ରାଧାନାଥଙ୍କୁ ଯେଉଁ ଅର୍ଥରେ ଆମେ ଆଧୁନିକ କବି ଭାବରେ ଚିହ୍ନିତ କରିଥାଉଁ, ଠିକ୍ ସେହି ଅର୍ଥରେ କବିସୂର୍ଯ୍ୟ ଆଧୁନିକ ହୋଇ ପାରିବେ ନାହିଁ । ତଥାପି କବିସୂର୍ଯ୍ୟଙ୍କର ସାହିତ୍ୟ ସୃଷ୍ଟିରେ ଆଧୁନିକତାର କେତେକ ଲକ୍ଷଣ ପ୍ରକଟିତ ହୋଇଥିବାର ଦେଖାଯାଏ । ରାଧାନାଥଙ୍କ ସାହିତ୍ୟ-ସୃଷ୍ଟି ପାଶ୍ଚାତ୍ତ୍ୟାନୁଗ କେତେକ ଆଧୁନିକ ଦୃଷ୍ଟିକୋଣ ଘେନି ଭଞ୍ଜ-ସାହିତ୍ୟ ଧାରାର ନବୀକରଣ ବା ସରଳୀକରଣ ବୋଲି ସମୀକ୍ଷକ-ମାନଙ୍କ ମଧ୍ୟରେ ଏକ ମତ ପ୍ରଚଳିତ ଅଛି । ପୁଣି ରାଧାନାଥ, ଫକୀରମୋହନ, ମଧୁସୂଦନ, ଗଙ୍ଗାଧର ପ୍ରମୁଖ ଆଧୁନିକ ଯୁଗର କବିମାନଙ୍କ ସାହିତ୍ୟରେ ଭକ୍ତିଭାବ ଓ ଧର୍ମୀୟ ଚେତନା ପ୍ରାଚୀନ କବିମାନଙ୍କର ଧର୍ମୀୟ ଚେତନାଠାରୁ ବିଶେଷ ଦୂରବର୍ତ୍ତୀ ନୁହେଁ । ତେଣୁ କବିସୂର୍ଯ୍ୟ ବଳଦେବଙ୍କ ସାହିତ୍ୟ ସୃଷ୍ଟିରେ ଆଧୁନିକ ଯୁଗ ସାହିତ୍ୟର ଅଙ୍କୁରୋଦ୍‌ଗମ ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ପୂର୍ବରୁ ସୂଚିତ ହୋଇଛି ଯେ କବିସୂର୍ଯ୍ୟ ଏକ ଯୁଗସନ୍ଧି କାଳରେ

✳ ହାସ୍ୟକଲ୍ଲୋଳ—ସରସ ସାହିତ୍ୟ ସମିତି, କଟକ (୧୯୭୫)—ଗ୍ରନ୍ଥପ୍ରବେଶ ଦ୍ରଷ୍ଟବ୍ୟ ।

ଲେଖନୀ ଧାରଣ କରିଥିଲେ । ସାହିତ୍ୟ-ସୃଷ୍ଟି କ୍ଷେତ୍ରରେ ସେ ଯୁଗୀୟ ପରମ୍ପରା ଅନୁସରଣ କରିଛନ୍ତି ସତ୍ୟ, କିନ୍ତୁ ସ୍ଥଳବିଶେଷରେ ସ୍ୱତନ୍ତ୍ରଦୃଷ୍ଟିର ପ୍ରକାଶ କରିବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ସେ ଆମର ପ୍ରାଚୀନ ସାହିତ୍ୟ ଓ ଆଧୁନିକ ସାହିତ୍ୟ ମଧ୍ୟରେ ଏକ ସଫଳ ଭାବ-ସଂବାହିକା ସଂଯୋଗ-ସେତୁ ରୂପେ କାର୍ଯ୍ୟ କରିଛନ୍ତି । ତାଙ୍କର ସାରସ୍ୱତ ସମ୍ପଦ ଆଧୁନିକ ସାହିତ୍ୟର ଉଦୟାଚଳରେ ପ୍ରଥମ ଅରୁଣାଲୋକ ।

କବିସୂର୍ଯ୍ୟ ବଳଦେବଙ୍କ ପୂର୍ବପୁରୁଷ ବାଣପୁରସ୍ଥ ମଣିପୁର ଗ୍ରାମରୁ ଉଠିଯାଇ ଗଞ୍ଜାମ ଅଞ୍ଚଳରେ ବ୍ରାହ୍ମଣକର୍ମାନୁଷ୍ଠାନ ଦ୍ୱାରା ଜୀବିକା ନିର୍ବାହ କରୁଥିଲେ । ସେହି ଗଞ୍ଜାମର ବଡ଼ଖେମୁଣ୍ଡିଠାରେ ପଣ୍ଡିତ ଉତ୍କଳ ରଥଙ୍କ ଔରସରୁ କବିସୂର୍ଯ୍ୟଙ୍କର ଜନ୍ମ । ତାଙ୍କର ମାତା ଥିଲେ ଗଞ୍ଜାମ ଆଠଗଡ଼ର ତାନ୍ତ୍ରିକ ପଣ୍ଡିତ ନିପୁଣର ଓ ତାଙ୍କର କନ୍ୟା । ଏଠାରେ ତାଙ୍କର ବଂଶଲତା ପ୍ରଦତ୍ତ ହେଲା :—




ପିତା ଉତ୍କଳ ରଥ ଥିଲେ ଜଣେ ବହୁଶାସ୍ତ୍ରଦର୍ଶୀ ସଂସ୍କୃତ ପଣ୍ଡିତ । ସେ ସଂସ୍କୃତରେ 'ସଜ୍ଜନାନନ୍ଦ ଚମ୍ପୂ', 'ରାମ ଚମ୍ପୂ' ପ୍ରଭୃତି ରଚନା କରି ବଡ଼ଖେମୁଣ୍ଡି ରାଜସଭାରେ ସଭାପଣ୍ଡିତ ରୂପେ ସ୍ଥାନ ପାଇଥିଲେ ଏବଂ ରାଜାଙ୍କ ପ୍ରଦତ୍ତ 'କବିରାଜବ୍ରହ୍ମା' ଉପାଧି ଗ୍ରହଣ କରିଥିଲେ । ପିତାଙ୍କର କବିତ୍ୱ ଓ ପାଣ୍ଡିତ୍ୟରେ ବଳଦେବ ବାଲ୍ୟକାଳରୁ ଅନୁପ୍ରାଣିତ ହୋଇଥିଲେ ।

କିଶୋର ବୟସରେ ମାତାଙ୍କୁ ହରାଇ ସେ ଆଠଗଡ଼ରେ ଅଜାଙ୍କ ଘରେ ଯାଇ ରହିଲେ ଏବଂ ଅଜା ପଣ୍ଡିତ ବିପ୍ରବର ଓତାଙ୍କଠାରୁ ଶିକ୍ଷାଦୀକ୍ଷା ପ୍ରାପ୍ତ ହେଲେ। ପଣ୍ଡିତ ଓତାଙ୍କର ତନ୍ତ୍ର ସାଧନାର ପ୍ରଭାବ ବଳଦେବଙ୍କ ଉପରେ ପଡ଼ିଥିବାର ଜଣାପଡ଼େ। ପଣ୍ଡିତ ବିନାୟକ ମିଶ୍ର ମତ ପ୍ରକାଶ କରିଛନ୍ତି ଯେ—ବଳଦେବ ତନ୍ତ୍ର ପୂଜାରେ ନିପୁଣ ଥିବା ସମ୍ଭବ। ଆଠଗଡ଼ ନିକଟବର୍ତ୍ତୀ ତାରିଣୀ ଠାକୁରାଣୀଙ୍କଠାରେ ପ୍ରଚଳିତ ବାମାଚାର ତନ୍ତ୍ରମତରେ ସେ ଦୀକ୍ଷିତ ଥିଲେ ବୋଲି ମନେ ହୁଏ *। ନିଜର ବାପା ଓ ଅଜାଙ୍କ ଯତ୍ନରୁ ବଳଦେବ ସଂସ୍କୃତ, ଓଡ଼ିଆ, ତେଲୁଗୁ ଆଦି ଭାଷା ଶିକ୍ଷା କରି ସେହି ସେହି ଭାଷାରେ ଲିଖିତ ବିଭିନ୍ନ ଗ୍ରନ୍ଥ ଅଧ୍ୟୟନ ପୂର୍ବକ ଅଳ୍ପ ସମୟ ମଧ୍ୟରେ ବହୁଶାସ୍ତ୍ରଦର୍ଶୀ ହୋଇ ପାରିଥିଲେ। ଏହି ବହୁଶାସ୍ତ୍ରଦର୍ଶିତା ପରବର୍ତ୍ତୀ କାଳରେ ତାଙ୍କ ସାହିତ୍ୟ-ସାଧନାର ସହାୟକ ହୋଇଥିଲା।

ବଳଦେବ ପ୍ରାୟ ୧୫ ବର୍ଷ ବୟସରେ ପୁରୀନିବାସୀ ରାମକୃଷ୍ଣ ମିଶ୍ରଙ୍କ କନ୍ୟା ରତ୍ନମଣି ଦେବୀଙ୍କୁ ବିବାହ କରିଥିଲେ। ବିବାହର ଅଳ୍ପ ଦିନ ପରେ ପିତା ଉଜ୍ଜ୍ୱଳ ରଥଙ୍କର ପରଲୋକ ହୋଇ ଯିବାରୁ ସେ ଜୀବିକାର୍ଜନ ଉଦ୍ଦେଶ୍ୟରେ ସପରିବାର ବଡ଼ଖେମୁଣ୍ଡିରୁ ଯାଇ ଜଳନ୍ତରରେ ବସବାସ କରିବାକୁ ଲାଗିଲେ ( ଜଳନ୍ତର ଏବେ ଆନ୍ଧ୍ରପ୍ରଦେଶରେ )। ସେଠାକାର ତତ୍‌କାଳୀନ ରାଜା ରାମଚନ୍ଦ୍ର ଶ୍ରେଷ୍ଠବର୍ମ୍ମ ଜଣେ ଗୁଣଗ୍ରାହୀ ବ୍ୟକ୍ତି ଥିଲେ ଏବଂ ବଳଦେବଙ୍କ ସର୍ଜନା ଶକ୍ତିର ସନ୍ଧାନ ପାଇ ତାଙ୍କୁ କାବ୍ୟ କବିତା ରଚନା କରିବା ପାଇଁ ଉତ୍ସାହିତ କଲେ।

ବଳଦେବ ପ୍ରଥମେ କ୍ଷୁଦ୍ର କ୍ଷୁଦ୍ର କବିତା ଲେଖି ରାଜା ରାମଚନ୍ଦ୍ର ଶ୍ରେଷ୍ଠବର୍ମ୍ମଙ୍କ ପୃଷ୍ଠପୋଷକତାରେ ସାହିତ୍ୟ-ସାଧନାର ସୂତ୍ରପାତ କଲେ। ସାଙ୍ଗୀତିକ ଛନ୍ଦରେ ବହୁ କବିତା ରଚନା କରି ସେ ଜଳନ୍ତର ରାଜାଙ୍କ ନାମରେ ଭଣିତା କରିଛନ୍ତି। ଏହି ସମୟରେ ରାଜା ଶ୍ରେଷ୍ଠବର୍ମ୍ମଙ୍କ ପରାମର୍ଶ କ୍ରମେ ସେ ଭଞ୍ଜୀୟ ଶୈଳୀରେ 'ଚନ୍ଦ୍ରକଳା' କାବ୍ୟ ରଚନା କରିଥିଲେ। କାବ୍ୟଟି ରାଜାଙ୍କର ରୂପସୀ ପାଳିତା କନ୍ୟା ଚନ୍ଦ୍ରକଳାକୁ ଉପଲକ୍ଷ୍ୟ କରି ରଚିତ ହେଉଥିଲା; ଚଉଦ ଗୋଟି ଛାନ୍ଦ ରଚିତ ହେବା ପରେ କନ୍ୟାଟିର

* ଓଡ଼ିଆ ସାହିତ୍ୟର ଇତିହାସ—ଉତ୍କଳ ସାହିତ୍ୟ ପ୍ରେସ୍, କଟକ (୧୯୬୮)—ପୃଷ୍ଠା ୧୭୫

ଅକାଳ ବିୟୋଗ ଘଟିବାରୁ ବଳଦେବ କାବ୍ୟଟି ପ୍ରିୟ ଆଉ ମନୋନିବେଶ କରି ପାରିଲେ ନାହିଁ । ପରେ ଅଧିକ ସାତ ଗୋଟି ଛାନ୍ଦ ରଚନା କରି ଯୋଗ କରିଥିଲେ ସୁଦ୍ଧା କାବ୍ୟଟି ସେହି ଏକବିଂଶ ଛାନ୍ଦରେ ଅସମ୍ପୂର୍ଣ୍ଣ ହୋଇ ରହିଛି । ଏହି କାବ୍ୟଟି ରାଜା ରାମଚନ୍ଦ୍ର ଶ୍ରେଷ୍ଠରାୟଙ୍କ ନାମରେ ଭଣିତା କରାଯାଇଛି ।

ଜଳନ୍ତରର ରାଜା ଶ୍ରେଷ୍ଠରାୟ ବଳଦେବଙ୍କୁ 'କବିସୂର୍ଯ୍ୟ' ଉପାଧିରେ ଭୂଷିତ କରିଥିଲେ ଏବଂ ପରେ ତାଙ୍କୁ ରାଜ୍ୟର ଦେବାନ୍ ରୂପେ ନିଯୁକ୍ତ କରିଥିଲେ । ଦେବାନ୍ ଭାବରେ ବଳଦେବ ପ୍ରଶାସନିକ ଦକ୍ଷତା ଦେଖାଇ ଜଳନ୍ତରରେ ସୁଶାସନ ପ୍ରତିଷ୍ଠା କରିଥିଲେ ଏବଂ ବହୁ ପ୍ରଜାହିତକର କାର୍ଯ୍ୟ କରିଥିଲେ । ରାଜ୍ୟରେ କୃଷିର ଉନ୍ନତି, ରାଜା ଶ୍ରେଷ୍ଠରାୟଙ୍କ ସଭାପତିତ୍ୱରେ 'ଉତ୍କଳାଗୁର' ସଭା ସ୍ଥାପନ ଏବଂ ମଞ୍ଜୁଷା-ଜଳନ୍ତର ମଧ୍ୟରେ ଥିବା ବିବାଦ ଭଞ୍ଜନ କରି ଦୁଇ ରାଜାଙ୍କ ମଧ୍ୟରେ ମୈତ୍ରୀ ପ୍ରତିଷ୍ଠା ପ୍ରଭୃତି ତାହାର ପ୍ରମାଣ । ତାହା ସଙ୍ଗେ ସଙ୍ଗେ 'କବିସୂର୍ଯ୍ୟ" ଉପାଧି ଲାଗି ନିଜକୁ ଯୋଗ୍ୟ କରିବା ଉଦ୍ଦେଶ୍ୟରେ ବଳଦେବ ନିଷ୍ଠାପର ଭାବରେ ସାହିତ୍ୟ-ସାଧନା ମଧ୍ୟ ଚଳାଇଥିଲେ ।

ଜଳନ୍ତରରେ ପ୍ରାୟ ବାର ବର୍ଷ ବିତାଇଲା ପରେ କବିସୂର୍ଯ୍ୟ ବଳଦେବ ଗଞ୍ଜାମର ଆଠଗଡ଼ ରାଜ୍ୟକୁ ଯାଇ ସେଠାର ରାଜା ବାଲୁକେଶ୍ୱର ହରିଚନ୍ଦନ ଜଗଦ୍ଦେବଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ । ରାଜା ହରିଚନ୍ଦନ ଜଗଦ୍ଦେବ ବୈଷ୍ଣବ ଥିଲେ । ତେଣୁ କବିସୂର୍ଯ୍ୟ ରାଧାକୃଷ୍ଣ-ଲୀଳାକୁ ଭିତ୍ତି କରି ବହୁ ଚଉପଦୀ ଏବଂ ସୁପରିଚିତ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ଏଠାରେ ରଚନା କରି ରାଜାଙ୍କ ନାମରେ ଭଣିତା କରିଥିଲେ । କେତେକ ବ୍ୟଙ୍ଗ କବିତା, ଚୁମ୍ପା, ଚଉତିଶା, ମନାସ ଗୀତ, ହାସ୍ୟକଲ୍ଲୋଳ ମଧ୍ୟ ସେ ଏହିଠାରେ ରଚନା କରିଥିଲେ । ଆଠଗଡ଼ରେ ପ୍ରାୟ ଦଶ ବର୍ଷ ରହଣି ମଧ୍ୟରେ କବିସୂର୍ଯ୍ୟ ବଳଦେବ ପୁରୀ ଯାଇ ତତ୍କାଳୀନ ରାଜା ଦିବ୍ୟସିଂହ ମୁକୁନ୍ଦଦେବଙ୍କ (ରାଜତ୍ୱ କାଳ ୧୭୯୫—୧୮୧୭) ରାଜସଭାରେ ସମ୍ମାନ ଓ ସ୍ୱୀକୃତି ଲାଭ କରିଥିଲେ । ମୁକୁନ୍ଦଦେବ ବଳଦେବଙ୍କ କବିପ୍ରତିଭା ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ୧୮୧୫ ମସୀହାରେ ତାଙ୍କୁ 'କବିସୂର୍ଯ୍ୟ ରାୟଗୁରୁ ମହାପାତ୍ର' ଉପାଧିରେ ଭୂଷିତ କରି ସନନ୍ଦ ଦେଇଥିଲେ । ସନନ୍ଦଟିର ନକଲ ଏଠାରେ ଉଦ୍ଧାର କରାଗଲା :—

"ଶ୍ରୀ ଶ୍ରୀ ଶ୍ରୀ ମୁକୁନ୍ଦଦେବଙ୍କ ୨୩ ଅଙ୍କ ବିଛା ମାସ ୧୫ ଦିନ ଶ୍ରୀ ପୁରୁଷୋତ୍ତମ ବଡ଼ ଦେଉଳ ସମସ୍ତ ପରିଛାଙ୍କୁ, ସମସ୍ତ କାର୍ଯ୍ୟୀମାନଙ୍କୁ, ସମସ୍ତ ସେବକମାନଙ୍କୁ ୧୮ ଗଡ଼ଜାତର ମହାନାୟକମାନଙ୍କୁ, ଷୋଳ ଶାସନ ମହାଜନମାନଙ୍କୁ, ସାତ ଧାଇ ନାୟକମାନଙ୍କୁ ମଧ୍ୟ ଚିଟାଉ, ଆଠଗଡ଼ ନିବାସୀ ବଳଦେବ ରଥଙ୍କୁ କବିସୂର୍ଯ୍ୟ ବିଷୟରୁ ମହାପାତ୍ର ପଦ, ସୁନାବେଣ୍ଟ ଚାମର ଜୋଡ଼ା ମଶାଲ, ଘୋଷରା ପାବଚ୍ଛ, ଯାଉଁଳି କବାଟ, ମଗର ମୁହାଁ ପାଲିଙ୍କି ଓ ଚୂଦର, ଅଡ଼େଣୀ, ଖାସ,ପୃଥକ୍ ନମସ୍କାର, ଖିଜମତ ଘର ବୈଠକ ଘର ଛାଡ଼ । ଏପରି ସମସ୍ତ ପ୍ରତିଷ୍ଠା କାର୍ଯ୍ୟମାନଙ୍କୁ ଶ୍ରୀ ଶ୍ରୀ ଶ୍ରୀ ଛାମୁରୁ ଆଜ୍ଞା ହୋଇଥିବାରୁ ଆଜ ତାରିଖ ଆଜ୍ଞାନୁସାରେ ଲେଖିବାକୁ ହୋଇଲା । ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଭଣ୍ଡାରରୁ ସୁନାବେଣ୍ଟ ଚାମର ଦେଇ ଚନ୍ଦନ ଅର୍ଗଳଠାରେ, ରଥ ଉପରେ, ଚୂଡ ଉପରେ, ଯାନଯାତ୍ରାମାନଙ୍କରେ ଚାମରସେବା ଖଟାଇବ । ଚାଙ୍ଗଡ଼ାଘରୁ ଗୀତଗୋବିନ୍ଦ ଖଣ୍ଡୁଆ ମୋଡ଼ଏ ଲେଖାଏଁ ଦେଉଥିବ । ଏହାଙ୍କୁ ଉତ୍ତମରୂପେ ଦର୍ଶନ କରାଇ ଦେଉଥିବ । ବାକି ବିଷୟ ଛାମୁଙ୍କ ଚିଟାଉ ଲିଖିତମତେ ପୁରୁଷାନୁକ୍ରମେ କରୁଥିବ । ଆକଟ ନ କରିବ ।" ମହାରାଜାଙ୍କର ଦସ୍ତକ ଓ ମୋହର । †

ପୁରୀରେ କବିସୂର୍ଯ୍ୟ କେତେକ ଜଣାଣ, ସ୍ତୁତି ଏବଂ ରାଜା ମୁକୁନ୍ଦ-ଦେବଙ୍କ ଭଣିତାରେ ଚଉପଦୀ ଓ ଛାନ୍ଦ କବିତାମାନ ରଚନା କରିଥିଲେ । ଆଠଗଡ଼ ତଥା ପୁରୀଠାରେ ତାଙ୍କୁ ବିଭିନ୍ନ ପଣ୍ଡିତମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେବାକୁ ପଡ଼ିଥିଲା ଓ ତହିଁରେ ସେ ଜୟଯୁକ୍ତ ହୋଇ ପାରିଥିଲେ ।

ତତ୍ପରେ ମାନ୍ଦ୍ରାସ୍ ପ୍ରେସିଡେନ୍ସି ଅଧୀନରେ ଥିବା ତତ୍କାଳୀନ ଗଞ୍ଜାମ-ଜିଲାର ଗୋରା କଲେକ୍ଟରଙ୍କଦ୍ୱାରା କବିସୂର୍ଯ୍ୟ ବଳଦେବ ମହୁରୀ ରାଜ୍ୟର ମେନେଜର୍ ରୂପେ କିଛିକାଳ ପାଇଁ ନିଯୁକ୍ତ ହୋଇଥିଲେ ଏବଂ ପାରଳାଖେମୁଣ୍ଡିର ରାଜପୁତ୍ର ଜଗନ୍ନାଥ ନାରାୟଣ ଦେବଙ୍କର ଶିକ୍ଷକ-ଅଭିଭାବକ ରୂପେ ମଧ୍ୟ କେତେ ବର୍ଷ କାର୍ଯ୍ୟ କରିଥିଲେ । ଆଠଗଡ଼, ଜଳନ୍ତର ଆଦି ରାଜାମାନଙ୍କର ଦାନ ଭୂସମ୍ପତ୍ତି ତଥା ଅର୍ଥବୃତ୍ତି ଭୋଗ କରି ଶେଷ ଜୀବନ ସେ ବ୍ରହ୍ମପୁରରେ କଟାଇ ଥିବାର ଜଣାପଡ଼େ । ସେହି ବ୍ରହ୍ମପୁରରେ କବିସୂର୍ଯ୍ୟଙ୍କର

† କବିସୂର୍ଯ୍ୟ ଗ୍ରନ୍ଥାବଳୀ—ସ : ପଣ୍ଡିତ କୁଳମଣି ଦାସ, ଓଡ଼ିଶା ପବ୍ଲିସିଂ ହାଉସ୍, କଟକ (ତୃତୀୟ ମୁଦ୍ରଣ—୧୯୫୭,—ପୃଷ୍ଠା ୩-

'ବସନ୍ତ ରୋଗରେ ପରଲୋକ ହୋଇଥିବା ବିଷୟ ପଣ୍ଡିତ କୁଳମଣି ଦାସ ଉଲ୍ଲେଖ କରିଛନ୍ତି ।

କବିସୂର୍ଯ୍ୟ ବଳଦେବ ସୁଦର୍ଶନ ପୁରୁଷ ଥିଲେ । ଅଧ୍ୟବସାୟୀ ଓ କର୍ତ୍ତବ୍ୟନିଷ୍ଠ ଥିବାରୁ ସେ ସବୁ କାର୍ଯ୍ୟରେ ସାଫଲ୍ୟ ଅର୍ଜନ କରିଥିଲେ । ସଙ୍ଗୀତଗାନ ଏବଂ ରସିକତାପୂର୍ଣ୍ଣ ଆଳାପ-ଆଲୋଚନାରେ ସେ କୃତିତ୍ୱ ପ୍ରଦର୍ଶନ କରିଥିଲେ । ତାଙ୍କର ଏକ ଆକର୍ଷଣୀୟ ବ୍ୟକ୍ତିତ୍ୱ ଥିଲା, ଯାହା ବଳରେ ସେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ । ସୁଖ୍ୟାତି, ସମାଦର ଓ ଆର୍ଥିକ ସ୍ୱଚ୍ଛଳତା ମଧ୍ୟରେ ସେ ସୁନ୍ଦର ଭଦ୍ର ଜୀବନ ଯାପନ କରୁଥିବାର କଥିତ ହୁଏ । ପଣ୍ଡିତ କୁଳମଣି ଦାସଙ୍କ ମତରେ—"କବିସୂର୍ଯ୍ୟଙ୍କ ଚରିତ୍ର ଅତି ମଧୁର ଓ କମନୀୟ ଥିଲା । ଏହି ଚରିତ୍ରମାଧୁରୀରେ ଆକୃଷ୍ଟ ହୋଇ ବାଳକଠାରୁ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ସହବାସ କାମନା କରୁଥିଲେ । ସ୍ୱୀୟ ପ୍ରତ୍ୟୁତ୍ପନ୍ନମତିପ୍ରସୂତ ବଚନଭଙ୍ଗୀରେ ସେ ସମସ୍ତଙ୍କୁ ମୁଗ୍ଧ କରି ପାରୁଥିଲେ । ନିଜ ପାଣ୍ଡିତ୍ୟ ବିଷୟରେ ସେ କେବେହେଁ ଅହଙ୍କାର କରୁ ନ ଥିଲେ, ତେଣୁ ତତ୍କାଳୀନ ସମାଜର ବହୁ ପଣ୍ଡିତ ଓ ଲେଖକ ତାଙ୍କ ସାହାଯ୍ୟରେ ନାନା ଭାବରେ ଉପକୃତ ହୋଇ ଅଛନ୍ତି ।" ✲

## ରଚନାବଳୀର ପରିଚୟ

କବିସୂର୍ଯ୍ୟ ବଳଦେବଙ୍କର ସମସ୍ତ ରଚନା ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ପାରି ନାହିଁ । ପଣ୍ଡିତ କୁଳମଣି ଦାସଙ୍କଦ୍ୱାରା ସଂକଳିତ ଓ ସମ୍ପାଦିତ ହୋଇ 'କବିସୂର୍ଯ୍ୟ' ଗ୍ରନ୍ଥାବଳୀ ୧୯୨୮ ମସିହାରେ ପ୍ରକାଶିତ ହେବା ପୂର୍ବରୁ କବିସୂର୍ଯ୍ୟଙ୍କର 'ହାସ୍ୟକଲ୍ଲୋଳ' (୧୮୭୨) 'ଚନ୍ଦ୍ରକଳା' (୧୮୯୮) ପ୍ରଭୃତି ଅଲଗା ଅଲଗା ହୋଇ ପ୍ରକାଶ ପାଇଥିଲା । ଗ୍ରନ୍ଥାବଳୀ ପ୍ରକାଶ ପରେ ମଧ୍ୟ କବିସୂର୍ଯ୍ୟଙ୍କର ଅନ୍ୟ କେତେକ ରଚନା ଦକ୍ଷିଣ ଓଡ଼ିଶାରେ ଅହରହ ବିକ୍ଷିପ୍ତ ହୋଇ ପଡ଼ି ରହିଥିଲା । ସେଥି ମଧ୍ୟରୁ କେତେକ ସଂଗ୍ରହ କରି ଧରାକୋଟର କବିବଲ୍ଲଭ ଭୁବନେଶ୍ୱର ମିଶ୍ର ୧୯୬୧ ମସିହାରେ 'କବିରବି-ଗୀତି-ଗଙ୍ଗାମ୍ବୁ' ନାମରେ ପ୍ରକାଶ କରିଥିଲେ । ବ୍ରହ୍ମପୁରସ୍ଥ ପ୍ରତିଭା ପ୍ରକାଶ ଭବନ ୧୯୬୪ ମଧ୍ୟରେ 'କବିସୂର୍ଯ୍ୟ-କବିତା-ସୀତା' ଦୁଇ ଖଣ୍ଡରେ ପ୍ରକାଶ କଲେ । ତତ୍ପରେ ୧୯୬୮ରେ କବିଚନ୍ଦ୍ର କାଳୀଚରଣ 'କବିସୂର୍ଯ୍ୟ ଗୀତାବଳୀ' ନାମରେ ଆଉ କିଛି ଅପ୍ରକାଶିତ ରଚନା ଆଲୋକକୁ ଆଣିଲେ । କଟକର 'ସରସ ସାହିତ୍ୟ ସମିତି'

✲ କବିସୂର୍ଯ୍ୟ ଗ୍ରନ୍ଥାବଳୀ—ପୃଷ୍ଠା ୮୮

କବିସୂର୍ଯ୍ୟଙ୍କର ଦୁଷ୍ପ୍ରାପ୍ୟ 'ହାସ୍ୟକଲ୍ଲୋଳ'କୁ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ରଙ୍କ ଦ୍ୱାରା ସମ୍ପାଦିତ କରାଇ ୧୯୭୫ ରେ ପ୍ରକାଶ କଲେ । ଏହା ପରେ ମଧ କବିସୂର୍ଯ୍ୟଙ୍କର କେତେକ ଓଡ଼ିଆ ଓ ସଂସ୍କୃତ ରଚନା ଅପ୍ରକାଶିତ ହୋଇ ରହିଯାଇ ଥିବାର ଜଣାପଡ଼େ । କବିସୂର୍ଯ୍ୟଙ୍କର କେତେକ ତେଲୁଗୁ ଚଉପଦୀ ରଚନା ପତ୍ର-ପତ୍ରିକାରେ ପ୍ରକାଶିତ ହୋଇଛନ୍ତି; ମାତ୍ର ଏହି ଆଲୋଚକ ସେଗୁଡ଼ିକ ଦେଖିବାର ସୁଯୋଗ ପାଇ ପାରି ନାହିଁ ।

ଉପରୋକ୍ତ ପ୍ରକାଶିତ ଗ୍ରନ୍ଥଗୁଡ଼ିକ ସାହାଯ୍ୟରେ କବିସୂର୍ଯ୍ୟ ବଳଦେବଙ୍କ ରଚନାବଳୀର ଏକ ପରିଚୟାତ୍ମକ ତାଲିକା ଏଠାରେ ପ୍ରଦାନ କରାଯାଉଛି—

୧ । କିଶୋରଚନ୍ଦ୍ରାନନ୍ଦ ଚମ୍ପୂ—କାବ୍ୟ ( ପରେ ପରେ ପୂର୍ଣ୍ଣାଙ୍ଗ ଆଲୋଚନା କରାଯାଉଛି ।)

୨ । ଚନ୍ଦ୍ରକଳା—ଏକବିଂଶ ଛାନ୍ଦ-ବିଶିଷ୍ଟ ଭଞ୍ଜୀୟ ଶୈଳୀରେ ରଚିତ ଅସମ୍ପୂର୍ଣ୍ଣ କାଳ୍ପନିକ କାବ୍ୟ । ଏଥିରେ ରାଜପୁତ୍ର ଅନଙ୍ଗସୁନ୍ଦର ଓ ରାଜକନ୍ୟା ଚନ୍ଦ୍ରକଳାଙ୍କର ପ୍ରଣୟକାହାଣୀ ବର୍ଣ୍ଣିତ ହୋଇଛି । ପ୍ରଥମ ଛାନ୍ଦରେ ପୁରୀ ଶ୍ରୀମନ୍ଦିରସ୍ଥ ଦେବଦେବୀଙ୍କର ବନ୍ଦନା ଗାଇ କବିସୂର୍ଯ୍ୟ ପାରମ୍ପରିକ ରୀତିରେ ସାଧୁ ସ୍ତୁତି, ଖଳନିନ୍ଦା କରିବା ସଙ୍ଗେ ସଙ୍ଗେ ବସ୍ତୁନିର୍ଦ୍ଦେଶ ଦେଇଛନ୍ତି—

ଜୟ ଲବଣଜଳଧି-ତୀର ଅଳଙ୍କାର
ଜୟ ଜମ୍ବୁଦ୍ୱୀପ କମ୍ବୁ ମଧ କ୍ଷେତ୍ରବର ହେ ॥
କଷ୍ଟଧ୍ୱଂସୀ ଅଷ୍ଟ ଅଷ୍ଟମୂର୍ତ୍ତି ଜୟ ଜୟ
ବସୁ ସଂଖ୍ୟ ଭବାନୀ କର ମୋ ଭୟ କ୍ଷୟ ହେ ॥
× × × × ×
ନମସ୍ତେ ଶ୍ରୀ ପରଂବ୍ରହ୍ମ ଚତୁର୍ଦ୍ଧା ବିଗ୍ରହ
ଅବଦାତ କୃଷ୍ଣ ହରିଦ୍ର ଭ ମହାମହ ହେ ॥
ଅବକାଶଠାରୁ ପୁଷ୍ପାଞ୍ଜଳି ଯାଏ ରହି
କରୁଥିବି ଦଣ୍ଡବତ ମୋ ବାଞ୍ଛିତ୍ର ଏହି ହେ ॥
ବନ୍ଦଇ ହେ ବିଶାରଦ ରସାତଳ ଦେବେ
ଦୟାଳୁ ମୋଠାରେ ହୃଦୟାଳୁମାନେ ହେବେ ଯେ ॥
ସରସ ଶ୍ରୀ ହରିପାଦ ମହାକବିମାନେ
ବିହରିଲେ ମହୋନ୍ନତ କବିନବିମାନେ ଯେ ॥
ଯେହି, ମାନ ତେଜ, ସେ ବିମାନ ଅନାତପ
କଲି ଚନ୍ଦ୍ରକଳା ଗ୍ରନ୍ଥାରମ୍ଭ ସଂକଳପ ହେ ॥
× × × × ×

ନିରକ୍ଷର ଖଳ ନୋହେ କଣ୍ଠାକ୍ଷର ଲକ୍ଷ୍ୟ
ତାହାକୁ ମାଗୁଣି ଏତେ ନୋହୁ ସେ ମୋ ପକ୍ଷ ହେ ॥
ଚରନ୍ତନ ଭକ୍ତିଚ୍ୟୁତ ମ୍ଲେଚ୍ଛଜ ଧ୍ୱନିକ
ସ୍ତୁତି ନିନ୍ଦା କେଉଁମତେ ପଣ୍ଡିତେ ଘେନି କି ହେ ॥
ତଥାପି ସେ କର୍ଣ୍ଣବଳେ ବ୍ୟଥା ନ ଦେବାକୁ
ବିରତ ଲଭନ୍ତୁ ବୋଲି କହୁଛି ତାହାଙ୍କୁ ଯେ ॥
ପଦ୍ମଲଗ୍ନ ଜମ୍ବାଳକୁ ଜଳେ ଧୂଆଇଲେ
ତା' ମାର୍ଜନା କଲି ବୋଲି କେହି ତ ନ ବୋଲେ ହେ ॥

× × × ×

ଚିନ୍ତା ରଖି ସୀତାକାନ୍ତ ପଦ-ସରୋରୁହେ
କଳନ୍ତରୁ ଧରାମରାବଳୀ-ପଡ଼ି କହେ ହେ ॥

୩ । ଚୌପଦୀ ରତ୍ନାକର ବା ରତ୍ନାକର ଚଉତିଶା—ଏହା ସାଧାରଣ ଚଉତିଶା ପରି ରଚିତ ହୋଇ ନାହିଁ । କ-ଠାରୁ କ୍ଷ-ପର୍ଯ୍ୟନ୍ତ ଅକ୍ଷର-କ୍ରମ ଘେନି ଏହା ଚଉତିରିଶଟି ଚଉପଦୀ ସଙ୍ଗୀତର ସମାହାର । ଏଥିରେ କୃଷ୍ଣଲୀଳା ବିଷୟ ଗୃହୀତ ହୋଇଛି—ରାଧା, କୃଷ୍ଣ ଓ ଲଳିତାଙ୍କର ଉକ୍ତି-ପ୍ରତ୍ୟୁକ୍ତି ମଧ୍ୟରେ ରାଧାକୃଷ୍ଣଙ୍କ ମିଳନ ବର୍ଣ୍ଣିତ ହୋଇଛି । ଏହାର ଖ (ଖେଳା ଖଞ୍ଜାଗୀଠ ଦୃଶା), ଛ (ଛଇଳା ମୋରେ ଗୁଡ଼ଉଳ ଗୁଡ଼), ପ (ପ୍ରୀତି ପରି କେ ସୁଆଦ ଗୋ), ର (ରମାବର ରେ) ପ୍ରଭୃତି ସଙ୍ଗୀତ ଉଚ୍ଚକୋଟୀର କବିତ୍ୱପୂର୍ଣ୍ଣ ରଚନା । କବିସୂର୍ଯ୍ୟ ଏହାକୁ ନିଜ ନାମରେ ଭଣିତା କରିଛନ୍ତି ।

ଚୌପଦୀ ରତ୍ନାକରକୁ 'ଚଂପୂ' ଅଭିଧାରେ ଚିହ୍ନିତ କରିବା ଠିକ୍ ନୁହେଁ । ସ୍ୱୟଂ କବିସୂର୍ଯ୍ୟ ଏହାକୁ 'ଚଂପୂ' ନାମରେ ଅଭିହିତ କରି ନ ଥିଲି ବେଳେ, କିଏ କିପରି ଏହାକୁ 'ଚଂପୂ' ନାମରେ ନାମିତ କଲି, ଜଣାପଡ଼ୁ ନାହିଁ ।

୪ । ଚୌପଦୀ ଚନ୍ଦ୍ରୋଦୟ ବା ପ୍ରେମୋଦୟ ଚଉତିଶା—ଏହା ଚୌପଦୀ ରତ୍ନାକର ବା ରତ୍ନାକର ଚଉତିଶାର ସ୍ୱରୂପ-ପ୍ରକୃତି ଘେନି କବି-ସୂର୍ଯ୍ୟଙ୍କର ଅନ୍ୟ ଏକ ରଚନା । ଏହାକୁ ମଧ୍ୟ ଅନୁଚିତ ଭାବରେ 'ଚଂପୂ' ନାମରେ ଚିହ୍ନିତ କରାଯାଇଛି । ଆଠଗଡ଼ ରାଜା ଶ୍ରୀହରିଚନ୍ଦନ ଜଗଦ୍ଦେବଙ୍କ ନାମରେ ଏହା ଭଣିତା କରା ହୋଇଛି । ଏହାର କ (କଳାବଣରେ, କହ

ମୋଠାରୁ ତେଜ କପଟ-ସ୍ୱାନ୍ତ), ଛ (ଘୁଡ଼ରେ ସଖି, ମନରୁ ହାସ ରେ), ଟ (ଟାଳଲା କେ ମୋ ସୁଖ ମୂଳକୁ), ଥ (ଥିଲେ ଅପରାଧ ମୋର), ଧ (ଧରଣୀ-ମଣ୍ଡନାକୁ ତୁ କହ ସହଚରୀ ଗୋ), ଲ (ଲାବଣ୍ୟବତୀ ଲାଜ ଧରୁ ଆଜ ମନରେ), ସ (ସୁକୁମାରୀ ନୃପତିକୁମାରୀ ) ପ୍ରଭୃତି ସଙ୍ଗୀତ ରସୋତ୍ତୀର୍ଣ୍ଣ ହୋଇଛି । ଉଦାହରଣ ସ୍ୱରୂପ କ ଗୀତରେ (ଶ୍ରୀ ରାଧାଙ୍କ ପ୍ରତି ସଖିର ଉକ୍ତି):

କଳାବନ୍ତି ରେ, କହ ମୋଠାରୁ ତେଜ କପଟସ୍ୱାନ୍ତ ॥

କାମ୍ପା ଆଜ ଆଜନମ ସୁଖୀ କଳାକର ମୁଖ ଅଛୁ ଶୁଖି

କମନୀୟ ବିମ୍ବ-ବିଜୟୀ ଅଧରେ ମୃଗମଦେ ଭୃଙ୍ଗ ନାହିଁ ଲେଖି ॥

କୋକନଦ ଜିଣା ରୁଚିରୁ କର-କିଶଳୟ ଗଣ୍ଡେ ମଣ୍ଡିବାର

କେଉଁକାଳେ ହେଲେ ଦେଖି ତ ନ ଥିଲା ପରାଣ ସଖି ନୟନ ମୋର ॥

କଞ୍ଚୁଲଚା ମନ୍ଦ ବାତ ପରି କଂପୁଛୁ ତୋ ତନୁ ସୁକୁମାରୀ

କିସ ଏ ବେଦନା ତୁ ରାଜନନ୍ଦନା ଲଭି ମର୍କି ଅଛୁ ଶୋକବାରି ॥

କନକକୁ ବଳଥିବା ତେଜ କଳା କଂପା ପଡ଼ିଗଲା ଆଜ

କହଇ ଶ୍ରୀ ଜଗଦ୍ଦେବ ଦୁଃଖେ ପୋତିଅଛୁ କଂପା ମୁଖ-ଦ୍ୱିଜରାଜ ॥

୫ । ଅନ୍ୟାନ୍ୟ ଚଉତିଶା—ଚୌପଦୀ ରତ୍ନାକର ଏବଂ ଚୌପଦୀ ଚନ୍ଦ୍ରୋଦୟ ବିଶେଷ ଧରଣର ଚଉତିଶା । ୩୪ ଗୋଟି ବ୍ୟଞ୍ଜନବର୍ଣ୍ଣର ଆଦ୍ୟ ବର୍ଣ୍ଣକୁ ଯେଉଁ କ୍ରମାନୁସାରେ ୩୪ ଟି ସଙ୍ଗୀତ ଉଭୟରେ ସ୍ଥାନ ପାଇଛି । ଏହା ବ୍ୟତୀତ କବିସୂର୍ଯ୍ୟ ବଳଦେବ କେତୋଟି ସାଧାରଣ ଚଉତିଶା ମଧ ରଚନା କରିଛନ୍ତି । ଯଥା—(କ) କାମଦୁହା ଚଉତିଶ – ଏଥିରେ ପ୍ରବାସୀ ଶ୍ରୀକୃଷ୍ଣଙ୍କର ଗୋପୀଗଣଙ୍କ ବିଷୟରେ ଅନୁଚିନ୍ତା ରୂପାୟିତ ହୋଇଛି । ଏହା ଆଠଗଡ଼ ରାଜା ବାଲୁକେଶ୍ୱର ଦେବଙ୍କ ନାମରେ ଭଣିତ ହୋଇଛି । (ଖ) ବିରହୀ ଚଉତିଶା—କାମଦୁହା ଚଉତିଶାର ଅନୁରୂପ । ଏହା ମଧ ସେହି ଆଠଗଡ଼ ରାଜାଙ୍କ ନାମରେ ଭଣିତ । ଏହାର କେତେକ କବିତ୍ୱପୂର୍ଣ୍ଣ ଶ୍ଳୋକର ଉଦାହରଣ—

ରୁହିଁଲେ ରୁଚିରଙ୍ଗେ ବାହାରେ ବଂଶୀ

ତକ୍ଷୁ ବୁଝିଲେ ପୁଣି ଶରେ ବଳସୁ ଯେ ।

ଋତୁରାଜ୍ୟନାଥ ଜାଣୁ ତୁ କି କୁହୁକ,

ଚିହ୍ନରୁ ଚିହ୍ନ ଏ ତ ଅଳଉକକ ରେ ॥

× × × ×

ଷୋଡ଼ଶ-ବୟସୀରେ ସଦୟ ହେବେ
ଷଡ଼ାସ୍ୟଜାତ-ଦେବ ମୋଠାରେ କେବେ ଯେ ।
ଷାଠିଏ ଦଣ୍ଡଯାକ ପୁଷ୍ପିତ କୁଞ୍ଜେ
ଷଡ଼ଙ୍ଘ୍ରି ହେବ କ ତୋ ଶ୍ରୀମୁଖ କଞ୍ଜେ ରେ ॥

(ଗ) ମଞ୍ଜୁଳା ଚଉତିଶା—କଣୋଷ୍ଣ ରାଧାଙ୍କର ଗୁମାନ ଭାଙ୍ଗିବା ପାଇଁ ଶ୍ରୀକୃଷ୍ଣଙ୍କର ଉକ୍ତି ଏହାର ଉପଜୀବ୍ୟ । ଆଠଗଡ଼ ରାଜାଙ୍କ ନାମରେ ଭଣିତ । ଏହାର କେତୋଟି ଚମତ୍କାର ଶ୍ଳୋକର ଦୃଷ୍ଟାନ୍ତ—

ଅନେରେ ତୋ ଶ୍ରୀମୁଖ ଭୂଷାର ମୟୂଖ ଶୁଖିଲି ଦେଖିଲି ନାହିଁ ରେ
ଅରେ ଏହା ଭୟ ବର୍ଣ୍ଣି ମୋ ହୃଦୟ ଅପୂର୍ବ ସୁଷମା ନାହିଁ ରେ
ମଞ୍ଜୁଳା, ଅ ପି ହେଉ କୋଧଭରରେ
ଥାଳ ଭୁ, ମୁଁ ଯୋଗୀ ହେଲେ ବପ୍ର ଯୋଗୀ ତୋତେ ସିନା ଅସୁନ୍ଦର ରେ ॥

× × × ×

ରମଣୀୟ ଶୀଳ ରମଣୀମଣ୍ଡଳ ରମଣୀ ତୁ ତ ବଦୂଷୀ ରେ
ରଖି ମନେ ଏହ୍ବ କଥାକୁ ମଥା ନୁଆଇଁ ବସନ୍ତ ରୁଷି ରେ
ମଞ୍ଜୁଳା, ରହସ୍ୟ ଲେକ ନ୍ତ ଭେଦ ରେ
ରମ୍ୟ ଗୁଣ ତୋର ରଖଇ କ ପଚେ ଜନ୍ମଇ ସିନା ନବେଦ ରେ ॥

(ଘ) ମୋହନା ଚଉତିଶା—ମଥୁରାରେ ଥାଇ ଶ୍ରୀକୃଷ୍ଣଙ୍କର ରାଧାଙ୍କ ବିଷୟରେ ଅନୁଚିନ୍ତା ଏଥିରେ ସ୍ଥାନ ପାଇଛି । ରାଜା ଜଗଦ୍ଦେବ ହରିଚନ୍ଦନଙ୍କ ନାମରେ ଏହା ମଧ୍ୟ ଭଣିତ । କେତୋଟି ଭଲ ଭଲ ଶ୍ଳୋକର ଉଦାହରଣ—

ଟୋକା ପଞ୍ଚଦଶଯାଏଁ ପରିବେଶ ପରା ଥାନ୍ତି କେତେ ଘେରି ରେ
ଟୋପି କସ୍ତୁରୀ ତିଳକ-ଶେ ଭିମ୍ବା ତୁ ପଞ୍ଚଦଶ ଶଶି ପରି ରେ
ମୋହନା, ଟେକାଇ କୁସୁମାଲଟ ରେ
ଟିକେ ପରସରେ ଉଭା ହେଲେ ପରେ ସଂସାର ସୁଷମା ଲଟ ରେ ॥

× × × ×

ଥରି ମନ୍ମଥରେ ଡରି ଥରେ ଥରେ ସରି ଯାଉଥାଏ ମୂର୍ଚ୍ଛି ରେ
ଥାପି କରିଦେଉ କ ଭାବରେ ମୂର୍ତ୍ତି ବଶୀବଂଶ-ବର-ମୁର୍ଚ୍ଛି ରେ
ମୋହନା, ଥିଲେ ତୋ ଗ୍ରୀମୁରେ ବସି ରେ
ଥାଟ ପରି ମାଡ଼ି ଆସୁଥିଲେ ଛାଡ଼ିଯାଏ ସ୍ମରଚାପ ରାଶି ରେ ॥

(ଙ) ସଖୀ ଚଉତିଶା—ଶ୍ରୀକୃଷ୍ଣଙ୍କ ପ୍ରୀତିଲାଭ ପାଇଁ ରାଧା ଆପଣା ସଖୀଙ୍କ ସମକ୍ଷରେ ପ୍ରକାଶ କରିଥିବା ବ୍ୟାକୁଳତା ଏଥିରେ ରୂପାୟିତ ହୋଇଛି । ଆଠଗଡ଼ ରାଜାଙ୍କ ନାମରେ ଭଣିତ । ଏହାର କେତେକ କବିତ୍ୱମୟ ଶ୍ଳୋକର ଦୃଷ୍ଟାନ୍ତ :

ଘାଣ୍ଟି ହେଉଅଛି ହୃଦାନ୍ତର ଘରେ ମନ ରହୁଂ ନାହିଁ ମୋର
ଘରମ ଉଦକ ସ୍ରବ ହେଉଅଛି ଭରମୁ ମୋ ଦେହ ଥରଥର ।
× × × ×
ଧୂର୍ତ୍ତପଣ ପଛେ ହେଉ ଖ୍ୟାତି ଧ୍ରୁବ ଯାଏଁ ଯାଉ ଅକୀରତି
ଧକ୍କା ମାରି ଘଉଡ଼ାଇ ଦେବା ଯାଏଁ ଧନ କରିବି ମୁଁ ତାହା ପ୍ରୀତି ॥

୬ । ହାସ୍ୟକଲ୍ଲୋଳ—ଏପର୍ଯ୍ୟନ୍ତ ଆବିଷ୍କୃତ କବିସୂର୍ଯ୍ୟଙ୍କ ରଚନାବଳୀ ମଧ୍ୟରେ ଏକମାତ୍ର ଗଦ୍ୟ ରଚନା । ଏହାର ଭଣିତାରେ ଅଛି— "ଶ୍ରୀ ବାଲୁଙ୍କେଶ୍ୱର ଶରଣ ହରିଚନ୍ଦନ ଶ୍ରୀ ଜଗଦ୍ଦେବ ମହୀ ମହେନ୍ଦ୍ର ଦେବକେଶ୍ୱରବିରଚିତ କଳ୍ପିତୋ ହାସ୍ୟକଲ୍ଲୋଳମ୍ ।" ରାଜାଙ୍କର ବ୍ରଣ ଫଟାଇବା ଉଦ୍ଦେଶ୍ୟରେ ହସାଇବା ଲାଗି କବିସୂର୍ଯ୍ୟ ଏହା ରଚନା କରିଥିବା ବିଷୟ ଗବେଷକ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ଅସ୍ୱୀକାର କରିଛନ୍ତି । ତାଙ୍କ ମତରେ —"ହାସ୍ୟକଲ୍ଲୋଳର ହାସ ଅତି ମୃଦୁଳ, ବିଶେଷ ନମ୍ର; ତାହା କଦାପି ପ୍ରବଳ ଅଟ୍ଟହାସ୍ୟ ନୁହେଁ ଯେ ବ୍ରଣ ବିଦୀର୍ଣ୍ଣ କରି ପାରିବ । × × ହାସ୍ୟ-କଲ୍ଲୋଳ ରଚନା ପାଇଁ ବଳିଷ୍ଠତର କାରଣ ରହିଥିଲା । × × × ବଳଦେବ ରଥଙ୍କ ପ୍ରୟୋଗଧର୍ମୀ ଲେଖନୀ ଏସବୁଠୁ ଦୂରରେ ରହି ପ୍ରସନ୍ନ ହାସ୍ୟରସ ପରିବେଷଣ ପାଇଁ ହାସ୍ୟକଲ୍ଲୋଳର ପରିକଳ୍ପନା କରିଥିବା ଅନୁମେୟ । ରାଜାଙ୍କ ଚିକିତ୍ସା ଅପେକ୍ଷା ସାହିତ୍ୟର ସମୃଦ୍ଧି ଯେ ତାହାଙ୍କର ଅଧିକ ଧ୍ୟେୟ ଥିଲା, ଏତିକ ସ୍ୱୀକାର କରାଯାଉ !" *

ହାସ୍ୟକଲ୍ଲୋଳରେ ଓଡ଼ିଆ ତଥା ସଂସ୍କୃତ ଭାଷା ବ୍ୟବହୃତ ହୋଇଛି । ଏହା ପୁଣି ଗଦ୍ୟ-ପଦ୍ୟ ମିଶ୍ରିତ ଗଳ୍ପ-ରଚନା । କିନ୍ତୁ ଏହାର ଗଳ୍ପାଂଶ ଦୁର୍ବଳ । ରହସ୍ୟଘୋଷ ରାଜ୍ୟ ଏବଂ ତାହାର ମହାସାମନ୍ତଙ୍କ ବିଷୟ ଏଥିରେ ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି । କାବ୍ୟିକତା, କଥନ-ଶୃଙ୍ଖଳା ଓ ରଙ୍ଗରସ

* ହାସ୍ୟକଲ୍ଲୋଳ—ସରସ ସାହିତ୍ୟ ସମିତି, କଟକ (୧୯୬୫) — ଗ୍ରନ୍ଥ ପ୍ରବେଶ ଦ୍ରଷ୍ଟବ୍ୟ ।

ଏଥିରେ ପୂର୍ବ ରହିଛି । ଆମର ପାରମ୍ପରିକ 'ଗଳ୍ପସାଗର'ଙ୍କ କଥନ ଭଙ୍ଗୀ କବିସୂର୍ଯ୍ୟ ବଳଦେବ ଅନୁସରଣ କରିଛନ୍ତି । ଏହାର ଭାଷାରେ ଯାବନିକ ଶବ୍ଦ ସହିତ ଦକ୍ଷିଣ ଓଡ଼ିଶାର ସାଧାରଣ ଲୋକ-କଥିତ ଭାଷା ଏବଂ 'ରଜନୂଡ଼ା ବୋଲି' ବ୍ୟବହୃତ ହୋଇଛି । କୟିଦଂଶର ଉଦାହରଣ—

"ସେ ଦେଶରେ ଅଛନ୍ତି ପୁଣି ବହୁତ ଗୁଣୀ ଓ ବହୁତ କାଣୀ । ଗୁଣୀ କେଉଁମାନେ ଏବଂ କାଣୀ କେଉଁମାନେ ? ପାଇକାଣୀ, ବାରିକାଣୀ, ନାଯୂକାଣୀ, ରେଡ଼ିକାଣୀ, କାଣୀ ଏମାନେ । ଗୁଣୀ କେଉଁମାନେ ତାହା କହିବା । ବେଢ଼େଗୁଣୀ, ମାଗୁଣୀ, ପଦ୍ଦଗୁଣୀ, କୁଦ୍ଦୁରୁଣୀ, ଖଡ଼ୁଗୁଣୀ, ବାଉଗୁଣୀ, ପାଟଗୁଣୀ, ଏମାନେ ଗୁଣୀ ଅଟନ୍ତି । ପୁନରପି ସେ ରାଜ୍ୟରେ ଚମତ୍କାର ଅଛି । କି କି ଅଛି କି ? ଗୁଣ୍ଡିଆ ଭିତରେ ମରମ ଅଛି । କପାଳ ଭିତରେ କରମ ଅଛି । × × × ନ ଥିବାରେ କି କି ନାହିଁ, ତାହା କହିବା । ଯୋଗୀଙ୍କ ଥାଳ ନାହିଁ । ଶୋଇବାକୁ ଶାଳ ନାହିଁ । ବସିବାକୁ ପାଳ ନାହିଁ । ଘରରେ ଗୁଳ ନାହିଁ । ମୁଣ୍ଡରେ ବାଳ ନାହିଁ । ଧାତୁରେ ଝାଳ ନାହିଁ । ପୁଣ୍ୟକୁ କାଳ ନାହିଁ । ଦେହରେ ବଳ ନାହିଁ । ରଇତର ହଳ ନାହିଁ । × × × ଏପରିରେ ସେ ରାଜ୍ୟରେ କୋଟିଏ ଉଣା ଦଶ ହଜାର ଫଉଜକୁ ମହାବାହାଦୁର ଦଶ ଦଶ ସରଦାର । କେଉଁ କେଉଁମାନେ ? କାଞ୍ଜି ବୈରିଗଞ୍ଜନ, ତୋଡ଼ି ଭାଙ୍ଗେଇ ମଲ୍ଲ, କୁଣ୍ଡା ଶତ୍ରୁଶଲ୍ଲ × × × ଯୁଦ୍ଧ ଦେଖିଲେ ପଛଘୁଞ୍ଚା ଦିଅନ୍ତି । ଢୁଗ ଦେଖିଲେ ହୁରି କରନ୍ତି । କାଣ୍ଡ ଦେଖିଲେ ଗୁଣ୍ଡ କମ୍ପାନ୍ତି । ଖଣ୍ଡା ଦେଖିଲେ ଦଣ୍ଡା ହୋଇ ଶୁଅନ୍ତି । ଫର ଦେଖିଲେ ସର ଯାଆନ୍ତି । × × × ସେ ଦେଶର ବେଶ୍ୟା କପରି କି ? ଲେଭିଡ଼ୀ ଲୀଳାବତୀ, ଥବୋଡ଼ୀ ଜଗନ୍ମୋହିନୀ, ଲେସଡ଼ି କଳାବତୀ, ଭେଷଡ଼ୀ ଇନ୍ଦୁବଦନା, ଦାନ୍ତୁଡ଼ୀ କୁନ୍ଦରଦନା ।" ଇତ୍ୟାଦି

୭ । ରଙ୍ଗରସର ଅନ୍ୟାନ୍ୟ ରଚନା—'ହାସ୍ୟ କଲ୍ଲୋଳ' ବ୍ୟତୀତ କବିସୂର୍ଯ୍ୟ ରଙ୍ଗରସର ଉଦ୍‌ବୋଧନ ପାଇଁ କେତୋଟି କବିତା ଲେଖିଥିବାର ଜଣାପଡ଼େ । ବିଶୁଦ୍ଧ ହାସ୍ୟ-କୌତୁକ ତଥା ବ୍ୟଙ୍ଗ-ବିଦ୍ରୂପ ଏଥିରେ ସେ ପ୍ରକଟିତ କରିଛନ୍ତି । (କ) ଜଗତେ କେବଳ—ଜନେ ହସିବେ ଏହି ତହୁଁ ଫଳ, (ଖ) କ ହାକୁ ଅଡ଼ିବା—କପାଳରେ ସିନା କର ଡାଡ଼ିବା—ବିଶେଷ ବିଶେଷ ପରିସ୍ଥିତିରେ ଏ ଦୁଇଟି ବ୍ୟଙ୍ଗ କବିତା ରଚିତ । ପ୍ରଥମଟି କବି ନିଜ ନାମରେ ଏବଂ ଦ୍ୱିତୀୟଟି ଜଳନ୍ତରର ରାଜାଙ୍କ ନାମରେ ଭଣିତା କରିଛନ୍ତି ।

(ଗ) ସରସେ କୁହା ଯାଉଥାଏ ସିନା—ଆଠଗଡ଼ର ଜନୈକ ରାଜକର୍ମଚାରୀଙ୍କ ଉଦ୍ଦେଶ୍ୟରେ ଲେଖା ବ୍ୟଙ୍ଗ କବିତା । ଉପର୍ଯ୍ୟୁକ୍ତ ଦୃଷ୍ଟାନ୍ତ ଓ ଅନୁପ୍ରାସାଦି ଅଳଙ୍କାରରେ କବିତାଟି ଉଚ୍ଚକୋଟୀର ହୋଇଛି । ଉଦାହରଣ—

ବାସୀ କୁସୁମକୁ ପ୍ରଶଂସିଲେ ହେଲେ ବାସିବ କି ମନୋହର
ଘାସୀଟାକୁ ସମ୍ଭୂଚିତ କି ଭୂଦେବ ଆଶୀର୍ବାଦ ଆଡ଼ମ୍ବର ।
ସରସେ କୁହା ଯାଉଥାଏ ସିନା
ଉହାଇ ଉହାଇ ପୁଟ ଦେଲେ ହେଲେ ଲୁହା କି ହୋଇବ ସୁନା ॥

(ଘ) ଦାଣ୍ଡ ଘନ୍ତ—ଏହା ବ୍ୟଙ୍ଗ କବିତାଟି ଗଣିକାଙ୍କ ଉଦ୍ଦେଶ୍ୟରେ ଲିଖିତ । କଳାତ୍ମକ ପ୍ରକାଶ ଭଙ୍ଗୀରେ କବିସୂର୍ଯ୍ୟ ବ୍ୟକ୍ତ କରିଛନ୍ତି—

ଦାଣ୍ଡ ବୋଲି ଯାହା କଲ ଦଇବ, ତା' ଘନ୍ତ ବଚନେ କିସ କହିବ
ଘର ହେଉ ପଛେ ଉରଜଶ୍ରେଣୀ, ନାଣ୍ଡରେ ନିକ ତା' ଗୁରକୁ ଗଣି
କାହାର ସେ ନୁହେଁ, ଜୁହାର ଗୋଲଇ ପଣ୍ଡିଏ ଦହୋ ॥ ଇତ୍ୟାଦି

୮ । ଭକ୍ତି ଗୀତିକା— (କ) ସର୍ପ ଜଣାଣ—ବ୍ୟାଜସ୍ତୁତି ଅଳଙ୍କାରରେ ଲେଖା ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ କବିଙ୍କର ଭକ୍ତି ନିବେଦନ । (ଖ) ଜଗନ୍ନାଥ ଜଣାଣ—ଜଗନ୍ନାଥଙ୍କୁ ଅତି ଆପଣାର ବୋଲି ମନେ କରି କବିଙ୍କର ହାର୍ଦ୍ଦ-ଗୁହାର ପ୍ରକାଶ । (ଗ) ମହାବାହୁ ଜଣାଣ—ସେହି ଜଗନ୍ନାଥଙ୍କ ପ୍ରତି କବିଙ୍କର ଭକ୍ତି ନିବେଦନ । ଏ ଜଣାଣଟି କିନ୍ତୁ ଚଉତିଶା ଆକାରରେ ରଚିତ । ଏହି ତିନୋଟିଯାକ ଜଣାଣ କବିସୂର୍ଯ୍ୟ ନିଜ ନାମରେ ଭଣିତା କରିଛନ୍ତି । (ଘ) ସ୍ତବ ବା ସ୍ତୁତି—ପଣ୍ଡିତ ଭୁବନେଶ୍ୱର ମିଶ୍ର 'କବିରତ୍ନ-ଗୀତି ଗଙ୍ଗାମ୍ବୁ' ସଙ୍କଳନରେ କବିସୂର୍ଯ୍ୟ ବଳଦେବଙ୍କର ଅଳ୍ପ କେତେଗୋଟି ସ୍ତବ ବା ସ୍ତୁତି ସଂଗ୍ରହ କରି ପ୍ରକାଶ କରିଛନ୍ତି । ତନ୍ମଧ୍ୟରେ ଗୋଟିଏ ଦୁଇଟି ସଂସ୍କୃତ ସ୍ତବ ମଧ୍ୟ ରହିଛି । ଏଠାରେ ଗୋଟିଏ ଓଡ଼ିଆ ଭାଷାରେ ରଚିତ ସ୍ତବର ଉଦାହରଣ ଦିଆଯାଉଛି—

ଭଜ ଭଜ ମନ ବ୍ରଜ-ମହିଳା-ମୋହନକୁ
ଶକୁନ୍ତସନ୍ତତି ମଣ୍ଡି-ମହେନ୍ଦ୍ର-ବାହନକୁ ॥

× × × ×

ତାପଭୟ-ତୃଣଚୟ ପ୍ରଳୟ ଦହନକୁ
ମୁନିଜନ ମନ ମୃଗ ତମାଳ ଗହନକୁ ॥
ସେହି ପ୍ରଭୁ କୃପାଦୃଷ୍ଟି ଧରି ସ୍ୱର୍ଗେ ସ୍ଥାନକୁ
ରାମଚନ୍ଦ୍ର ଦେବ ବୋଲେ ନ ଭଜରେ ଆନକୁ ॥

(ଡ) ମାଳଶ୍ରୀ—କବିସୂର୍ଯ୍ୟ ବଳଦେବଙ୍କର ଏହି ଏକମାତ୍ର ମାଳଶ୍ରୀ କବିଚନ୍ଦ୍ର କାଳୀଚରଣଙ୍କଦ୍ୱାରା ସଂଗୃହୀତ ହୋଇଛି । ଏହା ଆଠଗଡ଼ ରାଜାଙ୍କ ନାମରେ ଭଣିତ । ଏଥିରୁ କିୟଦଂଶ ଏଠାରେ ଉଦ୍ଧାର କରାଯାଉଛି—

ମା ଗୋ !

ଜୟ ଜୟ ଜଗଜ୍ଜନନୀ ବାଳା ଜୟ ମଙ୍ଗଳଦାୟିନୀ ମଙ୍ଗଳା
ମହେଶ ମହାସୁରତ ଲମ୍ପଟା ମନ୍ଦାରମାଳା ମଣ୍ଡିତ ମୁକୁଟା
ଚନ୍ଦ୍ର ମାରତଣ୍ଡ ମଣ୍ଡଳ ପ୍ରଚଣ୍ଡ ଧନଞ୍ଜୟ ତ୍ରିଲୋଚନା ଗୋ ମା
ଭୁବନ ଭୟଭର ବିମୋଚନା ॥

× × × ×

ମୁଣ୍ଡ ମଣ୍ଡଳ-ମାଳିକା ଭୂଷଣା କରାଳ କରାଳୀ କାଞ୍ଚି ଘୋଷଣା
ଶବଯୁଗଳୀ କଳିତ କୁଣ୍ଡଳା ନିତମ୍ବଚୁମ୍ବୀ ପ୍ରଳମ୍ବ କୁନ୍ତଳା
ଖଣ୍ଡା ମୁଣ୍ଡବର ଅଭୟ ସୁନ୍ଦର ଚତୁର୍ଭୁଜା ଦିଗମ୍ବରୀ ଗୋ ମା ॥

୯ । ଚୁଂପା—ଏହା ଏକ ପ୍ରକାର ଲୋକଗୀତିକା । ଏକ ବିଶେଷ ଧରଣର ବାଦ୍ୟ ସହିତ ଗାନ କରାଯାଇଥାଏ । ଅଦ୍ୟାବଧି କବିସୂର୍ଯ୍ୟଙ୍କଦ୍ୱାରା ରଚିତ ତିନିଗୋଟି ଚୁଂପା ଗୀତ ପ୍ରକାଶିତ ହୋଇଛି । ଚୁଂପା ଗୀତ ଗଞ୍ଜାମ ଆଠଗଡ଼ ଅଞ୍ଚଳରେ ପ୍ରଥମେ ଉଦ୍ଭାବିତ ହୋଇଥିଲା ଏବଂ କବିସୂର୍ଯ୍ୟ ବଳଦେବ ଏହାର ଆଦ୍ୟ ରଚୟିତା ବୋଲି ପଣ୍ଡିତ କୁଳମଣି ଦାଶ ମତ ପ୍ରକାଶ କରିଛନ୍ତି । * କବିସୂର୍ଯ୍ୟଙ୍କର (କ) ଗ୍ରୀଷ୍ମ ଚୁଂପା, (ଖ) ଜାଇଫୁଲ ଚୁଂପା ଏବଂ (ଗ) ନିଆଳୀଗିରି ଚୁଂପା ତିନିଟିଯାକ ପ୍ରେମ ଭାବାପନ୍ନ ରଚନା । ଆଠଗଡ଼ ରାଜାଙ୍କ ନାମରେ ସମସ୍ତ ଚୁଂପା ଗୀତ ଭଣିତ ହୋଇଛି । ଶେଷ ଦୁଇଟି ପୁଣି ଚଉତିଶା ରୀତିରେ ଲେଖା ଯାଇଛି । ଏଠାରେ ନିଆଳୀଗିରି ଚୁଂପାରୁ କିୟଦଂଶ ଉଦ୍ଧାର କରାଯାଉଛି—

କେତେ ଜନ୍ମ ତପ କରି କଳାକଳେବର ଗୁହିଁ
କୂଳ ପରିପାଳି ପାରିବ ନାହିଁ, ରେ ନିଆଳୀଗିରି
କହ ମୁଁ ପଶିବି କାହିଁ ॥
ଖିଆଲ ବିଗୁରିଥିଲି ଖୋସାମତ କେତେ କଲି
ଖିଲେ ମାତ୍ର ପାନ ଖୁଆଇ ଦେଲି, ରେ ନିଆଳୀଗିରି
ଖଟଣିରୁ ବଳି ଗଲି ॥ ଇତ୍ୟାଦି

* କବିସୂର୍ଯ୍ୟ ଗ୍ରନ୍ଥାବଳୀ—ପୃଷ୍ଠା ୫୨

୧୦ । ମନାସ—ଏହା ମଧ୍ୟ ଆମ ଲୋକଗୀତିକାର ଏକ ଶୈଳୀ ଥିବାର ଜଣା ପଡ଼େ । ଢାମ୍ଫିକା ବା ଚଢ଼ା-ଉତ୍ତର ଢାଞ୍ଚରେ ଏହା ସାଧାରଣତଃ ରଚିତ ହୋଇଥାଏ । ଫଳ ମନାସ, ଫୁଲ ମନାସ ଏବଂ ଅଳଙ୍କାର ମନାସ—ଏହି ତିନିଗୋଟି କବିସୂର୍ଯ୍ୟଙ୍କର ଏ ଜାତୀୟ ରଚନା ପ୍ରକାଶିତ ହୋଇଛି । ଏ ତିନିଟିଯାକ ମନାସ ଗୀତ ଆଠଗଡ଼ ରାଜାଙ୍କ ନାମରେ ଭଣିତା କରାଯାଇଛି । ଗୋଟିଏ ଉଦାହରଣ—

(ଚଢ଼ା) ଅଳୀର ବଧୂଲି ଜବା କଳାମଲ୍ଲୀ କୁସୁମ ଅନା କଦମ୍ବଅରି
ବଉଳ ମାଳତୀ ଚଂପକ ନିଆଳୀ କଳା ଇଟଳା ଟଗର
ଗଙ୍ଗଶିଉଳୀ ପୁନାଗ ବଳାସିମ୍ନବର ରେ ଏ ପଞ୍ଚଦଶ
ତରାଟ ମିଶି ଷୋଳ ହେଲା ଏଥିରୁ ଗୋଟିଏ ଫୁଲ ମନାସ ॥
ଇତ୍ୟାଦି

(ଉତ୍ତର) ଜାଣିଲି ରେ ସୁଦଶନା
ଜବା ତୁ ମନାସିଛୁ ମନେ ସିନା ରେ
ଜନ୍ମ ତ ନାହିଁ ବାସନା, ମୋ ବନ୍ଧୁ ରେ ॥ ଇତ୍ୟାଦି

୧୧ । ଚଉପଦୀ—ଏହା ରାଗରାଗିଣୀଯୁକ୍ତ କ୍ଷୁଦ୍ର କ୍ଷୁଦ୍ର କବିତା—ଉତ୍କଳୀୟ ସଙ୍ଗୀତର ବିଶିଷ୍ଟ ସମ୍ପଦ । ବର୍ତ୍ତମାନ ଆମ ରାଜ୍ୟରେ 'ଓଡ଼ିଶୀ ସଙ୍ଗୀତ' ନାମରେ ଯାହା ପ୍ରଚଳିତ ଅଛି, ଅଳ୍ପ କେତେ ବର୍ଷ ତଳେ ତାହା 'ଚଉପଦୀ' ବା 'ଚୌପଦୀ' ନାମରେ ହିଁ ପରିଚିତ ଥିଲା । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରୁ ଆମ ସାହିତ୍ୟରେ ଚଉପଦୀ ରଚନାର ପ୍ରାବଲ୍ୟ ପରିଲକ୍ଷିତ ହୁଏ । "ଚଉପଦୀରେ ଉପେନ୍ଦ୍ର କହେ" (ରସପଞ୍ଚକ), "ଚଉପଦୀ, ଚଉତିଶା ବିବିଧ ଲୀଳା" "(ବିଜସଭା—ବ୍ରଜନାଥ ବଡ଼ଜେନା)" ପ୍ରଭୃତି ପଙ୍‌କ୍ତିରୁ ଏହାର ଗୁରୁତ୍ୱ ଜଣାପଡ଼େ । ଚଉପଦୀକୁ ଆମର ପ୍ରାଚୀନ ଗୀତିକବିତା ବୋଲି ଯାଇପାରେ । ଏଥିରେ ସାହିତ୍ୟ ଓ ସଙ୍ଗୀତର ସୁନ୍ଦର ସମନ୍ୱୟ ସାଧିତ ହୋଇଛି । ଭିନ୍ନ ଭିନ୍ନ କବିଙ୍କର ଏକ ଚଉପଦୀ ସଂକଳନର ଉପକ୍ରମଣିକାରେ ଶ୍ରୀ ଗୋପାଳ ବଲ୍ଲଭ ଦାସ ପ୍ରାୟ ସତୁରି ବର୍ଷ ତଳେ ମତ ପ୍ରକାଶ କରିଥିଲେ —"ଚୌପଦୀ ଶ୍ରେଣୀର କବିତା ଫୁଲହାର, ଆଜି ଗନ୍ଥିଲେ କାଲିକି ବାସି; କିନ୍ତୁ ଏହାକୁ ସମସ୍ତେ ଜାଣନ୍ତି, ବ୍ୟବହାର କରି ପାରନ୍ତି; ଏହା ରାଜା ପ୍ରଜା ଧନୀ ନିର୍ଦ୍ଧନ ପଣ୍ଡିତ ମୂର୍ଖ ସବୁରି ଗଳାରେ ଶୋଭାପାଏ ଏବଂ ସମସ୍ତଙ୍କୁ

ସୁଖ ଦିଏ । ଏଣୁ କରି ଏ ଶ୍ରେଣୀର କବିତା ସାଧାରଣ ଭାବରୁଚି ପ୍ରଭୃତିର ମାଦଳାପାଞ୍ଜୀ; ଏସବୁ ଜହ୍ନିଫୂଲ ପରି ସଞ୍ଜେ ଫୁଟି ସକାଳେ ଯିବା ପଦାର୍ଥ ହେଲେ ମଧ୍ୟ ଏ ସବୁରୁ ସମାଜ-ବିଶେଷର ସାମୟିକ ଭାବରୁଚି ପ୍ରଭୃତିର ଯେପରି ପରିଚୟ ମିଳେ, ମହାଭାରତ ରାମାୟଣ ପ୍ରଭୃତିରୁ ସେପରି ମିଳେ ନାହିଁ; କାରଣ ଏପରି ମହାଗ୍ରନ୍ଥମାନ ସବୁ ଦେଶ-କାଳ ପାଇଁ ରଚିତ ଏବଂ ସବୁ ଦେଶକାଳକୁ ଖଟେ । ସୁତରାଂ ସମାଜ-ବିଶେଷରେ ସାମୟିକ ଭାବରୁଚି ଆଚାର ବ୍ୟବହାର ପ୍ରଭୃତି ସମ୍ବନ୍ଧେ ଚୌପଦୀ ଶ୍ରେଣୀର ସଙ୍ଗୀତରେ ଯାହା ଅଛି, ବୈଦେହୀଶ ବିଳାସ ବିଦଗ୍‌ଧଚିନ୍ତାମଣି ମହାଭାରତ ରାମାୟଣ ପ୍ରଭୃତିରେ ତାହା ମିଳିବାର ନୁହେଁ । ଏହି ହେତୁରୁ ଚୌପଦୀ ଶ୍ରେଣୀର ସଙ୍ଗୀତ ଯେ ପ୍ରକୃତ ଜାତୀୟ ସଙ୍ଗୀତ ବାଚ୍ୟ ଏଥିରେ ସନ୍ଦେହ ନାହିଁ ।" *

ସଂସ୍କୃତ 'ଚତୁଷ୍ପଦୀ' ଶବ୍ଦରୁ 'ଚଉପଦୀ' କଥାଟିର ଉଦ୍ଭବ । କିନ୍ତୁ ଏହା ଚାରି ପଦ ବା ଚାରି ପାଦ-ବିଶିଷ୍ଟ ହେବା ଅପରିହାର୍ଯ୍ୟ ନୁହେଁ । "ଚାରିପଦିଆ ଗୀତକୁ ଚଉପଦୀ କୁହାଯାଏ । କିନ୍ତୁ ଦୁଇ ବା ତିନିପଦିଆ ଗୀତକୁ ମଧ୍ୟ ଚଉପଦୀ ବୋଲି କହି ଥାଆନ୍ତି ଲୋକେ । ଚାରି ଗୋଟି ପଦରେ ରଚିତ ଚଉପଦୀର ପ୍ରଥମ ପଦକୁ ସ୍ଥାୟୀ, ଧ୍ରୁବ ବା ଘୋଷା ପଦ, ଦ୍ୱିତୀୟ ପଦକୁ ଅନ୍ତରା, ତୃତୀୟ ପଦକୁ ସଞ୍ଚାରୀ ଏବଂ ଚତୁର୍ଥ ପଦକୁ ଆଭୋଗ ବା ଭଣିତା-ପଦ କୁହାଯାଏ । ଘୋଷା ପଦର ଅକ୍ଷର ସଂଖ୍ୟା ଅନ୍ୟାନ୍ୟ ପଦମାନଙ୍କଠାରୁ ପ୍ରାୟ ଊଣା ହୋଇଥାଏ । ତା'ଛଡ଼ା ଚଉପଦୀ ସଙ୍ଗୀତରେ ପଦଗୁଡ଼ିକର ଅକ୍ଷର ସଂଖ୍ୟା ପ୍ରାୟ ସମାନ । ତେଣୁ ଗାୟକମାନେ ସେଗୁଡ଼ିକୁ ପ୍ରାୟ ଏକା ଢଙ୍ଗରେ ଗାଇ ଥାଆନ୍ତି । ଏପରି ସ୍ଥଳରେ ସେଗୁଡ଼ିକୁ ଅନ୍ତରା ବୋଲି କୁହାଯାଇ ପାରେ । କେତେକ ଗୀତରେ 'ପଡ଼' ଯୋଗ ହୋଇଥାଏ । ଏପରି ପଡ଼-ଲଗା ଗୀତ ଓଡ଼ିଶୀ ସଙ୍ଗୀତର ବିଶେଷତ୍ୱ ଚିହ୍ନାଏ । ପଡ଼ରେ ଲୟ ଓ ତାଳର ଚମତ୍କାରିତା ସଙ୍ଗୀତର ଶ୍ରୁତିମଧୁରତା ବଢ଼ାଇବା ସଙ୍ଗେ ସଙ୍ଗେ ଗୀତିକାର ଓ ସ୍ୱରଶିଳ୍ପୀଙ୍କର ବାହାଦୁରୀ ଫୁଟି ଉଠେ ।" †

---

* ପ୍ରୀତି ସୁଧାକର—ସଂ : ଶ୍ରୀ ଗୋପାଳବଲ୍ଲଭ ଦାସ, କଟକ ଏଡ଼ଓ୍ୱାର୍ଡ଼୍ ପ୍ରେସ୍ (୧୯୦୬)—ପୃଷ୍ଠା ୯୪-୧

† କବିସୂର୍ଯ୍ୟ ଗୀତାବଳୀ—ସମ୍ପାଦନା : କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଜଗନ୍ନାଥ ରଥ, କଟକ (୧୯୬୮)—ପୃଷ୍ଠା ୩୫

*

କବିସୂର୍ଯ୍ୟ ପାଞ୍ଚ ଶହରୁ ଅଧିକ ଚଉପଦୀ ରଚନା କରିଥିବାର ଜଣା ପଡ଼େ; ତନ୍ମଧ୍ୟରୁ ବର୍ତ୍ତମାନ ସୁଦ୍ଧା କେତେକ ଅପ୍ରକାଶିତ ରହିଛି । ଏହି ଚଉପଦୀ ସମୂହ ମୁଖ୍ୟତଃ ରାଧାକୃଷ୍ଣ-ପ୍ରୀତିମୂଳକ ହେଲେହେଁ, ତହିଁରେ ଯେ ଲୌକିକ ମାନବୀୟ ଭାବରାଜି ଅନ୍ତଃସଲିଳା ଫଲ୍‌ଗୁ ସଦୃଶ ପ୍ରବହମାନ, ତାହା ଅସ୍ୱୀକାର କରି ହେବ ନାହିଁ । ଚଉପଦୀଗୁଡ଼ିକର ଭଣିତାରେ କବିସୂର୍ଯ୍ୟ ବଳଦେବ ଆପଣା ନାମ ସହିତ କଳନ୍ତର ରାଜା ରାମଚନ୍ଦ୍ର ଶ୍ରେଷ୍ଠରାୟ, ଆଠଗଡ଼ ରାଜା ବାଲୁକେଶ୍ୱର ଜଗଦ୍ଦେବ ହରିଚନ୍ଦନ, ପୁରୀ ମହାରାଜା ମୁକୁନ୍ଦଦେବ ପ୍ରଭୃତିଙ୍କର ନାମ ସଂଯୁକ୍ତ କରିଛନ୍ତି । ସେ ନିଜେ ତ ଜଣେ ସୁକଣ୍ଠ ଗାୟକ ଥିଲେ ! ସ୍ୱରଚିତ ଚଉପଦୀ ନିଜେ ଗାନ କରିବା ସଙ୍ଗେ ସଙ୍ଗେ ସେ ମଦନମଣି, ରାଜମଣି ପାତ୍ର, ନାରାୟଣ ଜେନା ପ୍ରମୁଖ ଗାୟକଗାୟିକାମାନଙ୍କୁ ଚଉପଦୀଗୁଡ଼ିକ ଗାଇବା ପାଇଁ ଦେଉଥିଲେ । ✻ ପଣ୍ଡିତ କୁଳମଣି ଦାଶଙ୍କ ମତରେ— "କବିସୂର୍ଯ୍ୟ-ପ୍ରଣୀତ କୌଣସି ଦୁଇଟି ସଙ୍ଗୀତର ଭାବ ମଧ୍ୟ ପରସ୍ପର ଅନୁରୂପ ନୁହେଁ । ପ୍ରତ୍ୟେକର ମୌଳିକ ଚିନ୍ତା ଓ ରଚନା ସୌଷ୍ଠବ ବିଦ୍ୟମାନ ।" ଏଠାରେ ନମୁନା ରୂପେ କବିସୂର୍ଯ୍ୟଙ୍କର ଗୋଟିଏ ଚଉପଦୀର ଉଦାହରଣ ଦିଆଗଲା—

ମାନସରୁ ମାନ ସରୁ, ମାନ ସରୁ-ମଧ୍ୟମା ।
ହରି-ବରି-ଦୁଃଖ ମୋର     ହରବର ତୁ ନ କର
ହରି-ବରରେ ମୁଁ ତୋର ବର, କର ବରନା ॥

× × × ×

ତୁ ମୋ ଉର-ଅଦକ ରେ     ଚନ୍ଦନ କଥା ପଦକ ରେ
ଧରୁଛି ତୋ ପଦ କରେ ମୋଦକରେ ନବୀନା ॥
କବିସୂର୍ଯ୍ୟ ଦୀନବନ୍ଧୁ     ବୋଲି ହେଲି ଦୀନବନ୍ଧୁ
ରଖ ବାରେ ଦୀନବନ୍ଧୁ-ବନ୍ଧୁ ଜିତ-ନୟନା ॥

ଆଉ ଗୋଟିଏ ଚଉପଦୀ :— (କି ବର୍ଣ୍ଣିବି ରେ ତୋ କୁଚକୁ । ଶୋଭାଦେବୀ କର ଲୀଳା-ସରସିଜ କି ବହିଲି ମୁଖଚନ୍ଦ୍ର ରୁହିଁ ସଂକୋଚକୁ ॥)

✻ କବିସୂର୍ଯ୍ୟ ଗ୍ରନ୍ଥାବଳୀ—ପୃଷ୍ଠା ୫୦

କବିସୂର୍ଯ୍ୟଙ୍କର ଏକ ଚମତ୍କାର କବିତ୍ୱପୂର୍ଣ୍ଣ ରଚନା । ଏଠାରେ ଉଲ୍ଲେଖ-ଯୋଗ୍ୟ ଯେ—କବିସୂର୍ଯ୍ୟଙ୍କର ଏହି ଚଉପଦୀଟି ରଚିତ ହେବାର ବହୁ ପରେ କବିଗୁରୁ ରବୀନ୍ଦ୍ରନାଥ ଠାକୁର ନିଜର ସେହି ବିଖ୍ୟାତ 'ସ୍ତନ' କବିତାଟି (୧୮୮୬ରେ ପ୍ରକାଶିତ 'କଡ଼ି ଓ କୋମଲ୍' କାବ୍ୟ-ସଂସ୍କରଣର ଅନ୍ତର୍ଭୁକ୍ତ), ରଚନା କରିଥିଲେ ।

୧୨ । ଅନ୍ୟାନ୍ୟ ରଚନା—ଏହା ବ୍ୟତୀତ କବିସୂର୍ଯ୍ୟ ବଳଦେବ କେତେକ ବଡ଼ କବିତା, ଚଉତିଶା, ପାଞ୍ଚାଳୀ ଆଦି ରଚନା କରିଥିବାର ପ୍ରମାଣ ମିଳେ । ପଣ୍ଡିତ କୁଳମଣି ଦାଶ ଓ କବିଚନ୍ଦ୍ର କାଳୀଚରଣ ନିଜ ନିଜ ସଂକଳନରେ ତାହା ସନ୍ନିବେଶିତ କରିଛନ୍ତି । ପ୍ରେମର ବିଭିନ୍ନ ବିଭାବ, ଋତୁ ବର୍ଣ୍ଣନା ଆଦି ଏଥିରେ ରୂପାୟିତ ହୋଇଛି । କବିସୂର୍ଯ୍ୟଙ୍କର ସର୍ଜନା-ଶକ୍ତି କିପରି ବିଚିତ୍ର ଓ ବହୁମୁଖୀ ଥିଲା, ତାହା ଏଇଥିରୁ ପ୍ରତିପାଦିତ ହୁଏ । ଏଠାରେ ତାଙ୍କର ଚଉତିଶା ରଚନାରୁ କିୟଦଂଶ ଉଦ୍ଧାର କରାଯାଉଛି :—

କେଉଁ ବିରହୀ ନାଗରବର ପ୍ରିୟାଠାକୁ ଲେଖଇ ଉତ୍ତର

ଆରେ ପ୍ରାଣବନ୍ଧୁ, ଏବେ କାମସିନ୍ଧୁ—
ମଜ୍ଜିଅଛି ମୁଁ ବିରହେ ତୋର ରେ କଶୋଖି ॥

× × ×

ତୋର ସନ୍ନିଧି ତେଜିଲି ଦିନୁ କ୍ଷଣେ ତୁ ନ ଯାଉ ମୋର ମନୁ
ସୁତନୁ ଅତନୁ ମାର୍ଗଣେ ତୋ ବିନୁ
କରି ଦେଲାଣି ମୋ ତନୁ ତନୁ ରେ କଶୋଖି ॥
ନାହିଁ ମୋର ବଞ୍ଚିବା ଭରସା ତୋର ଦରଶନ ପ୍ରତି ଆଶା
କେବଳ ରଖିଛି କଷ୍ଟେ ପ୍ରାଣ ଅଙ୍ଗେ
କିସା ନୁହେଁ ନେଇ ନିତି ନିଶାରେ କଶୋଖି ॥
ନ ଜାଣୁ କି ଜଗଦ୍ଦେବ ଚିତ୍ତ ବନ୍ଧୁ ନାହିଁ ମୋ ଲେଶ ଆୟୁତ୍ତ
ଯେତେ ତୋ ବିଜିତ ପୂର୍ଣ୍ଣଚନ୍ଦ୍ର ମୁଖ
କରାଇବ ମୋ ନେତ୍ରଗତ ରେ କଶୋଖି ॥

## ଚମ୍ପୂ : ସ୍ୱରୂପ-ପ୍ରକୃତି

ଚମ୍ପୂ ସଂସ୍କୃତ କାବ୍ୟ-ସାହିତ୍ୟର ଏକ ସୁପରିଚିତ ଶୈଳୀ । ଏହା ଖଣ୍ଡକାବ୍ୟର ଅନ୍ତର୍ଗତ । 'ସାହିତ୍ୟ ଦର୍ପଣ'ର ଷଷ୍ଠ ପରିଚ୍ଛେଦରେ ବିଶ୍ୱନାଥ

କବିରାଜ ଲେଖିଛନ୍ତି—"ଖଣ୍ଡକାବ୍ୟଂ ଭବେତ୍ କାବ୍ୟ ସ୍ୟୈକଦେଶାନୁସାରି ଚ ।" ଅର୍ଥାତ୍ କାବ୍ୟର ଗୋଟିଏ ଗୋଟିଏ ବିଶେଷ ଘଟଣା ବା କାର୍ଯ୍ୟକୁ ଅବଲମ୍ବନ କରି ଖଣ୍ଡକାବ୍ୟ ରଚିତ ହୁଏ । ଏଥିରେ କାବ୍ୟର ଆଂଶିକ ଲକ୍ଷଣ ପ୍ରକାଶ ପାଇଥାଏ । କାଳିଦାସଙ୍କର 'ମେଘଦୂତ' ଖଣ୍ଡକାବ୍ୟର ଏକ ପ୍ରକୃଷ୍ଟ ନିଦର୍ଶନ । ଚମ୍ପୂ ସେହିଭଳି ପୂର୍ଣ୍ଣାଙ୍ଗ କାବ୍ୟ ନୁହେଁ, ମାତ୍ର କାବ୍ୟର ଆଂଶିକ ଲକ୍ଷଣ ଘେନି ଏହା ବିକଶିତ ହୋଇଥାଏ ।

ଚମତ୍କୃତ୍ୟ ପୁନାତିତି—ଚମ୍ପୂ । ଅର୍ଥାତ୍ ପାଠକସମାଜକୁ ଚମତ୍କୃତ କରି ପବିତ୍ର କରେ ବୋଲି ଏହାର ନାମ ଚମ୍ପୂ । ଆଳଙ୍କାରିକ ବିଶ୍ୱନାଥ କବିରାଜ ଚମ୍ପୂର ସଂଜ୍ଞା ନିର୍ଦ୍ଦେଶ କରି ଲେଖିଛନ୍ତି—

ଗଦ୍ୟପଦ୍ୟମୟଂ କାବ୍ୟଂ ଚମ୍ପୂରିତ୍ୟଭିଧୀୟତେ ॥

—ସାହିତ୍ୟ ଦର୍ପଣ, ଷଷ୍ଠ ପରିଚ୍ଛେଦ ।

ଗଦ୍ୟ-ପଦ୍ୟର ମିଶ୍ର ରଚନା ହିଁ ଚମ୍ପୂ । ସଂସ୍କୃତ ଭାଷାରେ ସ୍ୱତନ୍ତ୍ର ଭାବରେ ପଦ୍ୟ କାବ୍ୟ ଏବଂ ସ୍ୱତନ୍ତ୍ର ଭାବରେ ଗଦ୍ୟ କାବ୍ୟ ତ ରହିଛି ! କିନ୍ତୁ ପ୍ରକାଶଭଙ୍ଗୀରେ ବୈଚିତ୍ର୍ୟ ଓ ଚମତ୍କାରିତା ସୃଷ୍ଟି କରିବା ପାଇଁ ଚମ୍ପୂ ମଧ୍ୟରେ ଗଦ୍ୟ ତଥା ପଦ୍ୟ ଉଭୟର ସମନ୍ୱୟ କରାଯାଇଛି । ଚମ୍ପୂକୁ ଗଦ୍ୟ କାବ୍ୟର ସ୍ୱାଭାବିକ ପରିଣତି ବୋଲି କେହି କେହି ମନେ କରି ଥାଆନ୍ତି । ଗଦ୍ୟ କାବ୍ୟରେ ଗଦ୍ୟର ବିରକ୍ତିକର ସମସ୍ତରୀ ରୀତିକୁ ଭାଙ୍ଗିବା ପାଇଁ ପଦ୍ୟର ସମାବେଶ ଅତ୍ୟାବଶ୍ୟକ ହୋଇଥିବାର ମନେ ହୁଏ । ଗଦ୍ୟକାବ୍ୟରେ ଗଦ୍ୟ ହିଁ ଆଖ୍ୟାନ ଭାଗର ମୂଳ ବାହନ, କିନ୍ତୁ ଚମ୍ପୂରେ ଆଖ୍ୟାନ ଭାଗ ଗଦ୍ୟ ଓ ପଦ୍ୟ ଉଭୟ ସାହାଯ୍ୟରେ ବର୍ଣ୍ଣିତ ହୋଇଥାଏ । "ପଦ୍ୟର କମ୍ର କାନ୍ତି ଓ ସାଙ୍ଗୀତିକତା ସହିତ ଗଦ୍ୟର ପୌରୁଷ ଓ ଊର୍ଜସ୍ୱଳତାର ସଙ୍ଗତି ବା ମିଳନ ହୋଇ ଏକ ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ରୂପକ ଚମ୍ପୂକାବ୍ୟର ଉଦ୍ଭବ ହୋଇଅଛି ।" *

ଚମ୍ପୂ ମଧ୍ୟରେ ଗଦ୍ୟ-ପଦ୍ୟ ସମାବେଶର ଅନୁପାତ ସମ୍ପର୍କରେ ଆଳଙ୍କାରିକମାନଙ୍କର କୌଣସି ନିର୍ଦ୍ଦେଶ ଥିବାର ଜଣାଯାଏ ନାହିଁ । ତେଣୁ ସଂସ୍କୃତ ଚମ୍ପୂକାରଗଣ ଏ କ୍ଷେତ୍ରରେ ସାଧାରଣତଃ ଏକ ନିର୍ଦ୍ଦିଷ୍ଟ ନିୟମ ଅନୁସରଣ କରି ନାହାନ୍ତି । କେହି କେହି ସମାନ ଅନୁପାତରେ ଗଦ୍ୟ-ପଦ୍ୟ

* ସଂସ୍କୃତ ସାହିତ୍ୟର ଇତିହାସ—ଡକ୍ଟର ଶ୍ରୀମତୀ ସାବିତ୍ରୀ ରାଉତ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର (୧୯୭୧)—ପୃଷ୍ଠା ୧୫୧

ବ୍ୟବହାର କରିଥିଲ ବେଳେ ଆଉ କେହି କେହି ବ୍ୟବହାରରେ ଊଣାଧିକ କରି ଅଛନ୍ତି । ଚମ୍ପୂର ଗଦ୍ୟ-ଭାଗରେ ସାଧାରଣତଃ ବର୍ଣ୍ଣନା ବା ବିବରଣୀ ପ୍ରଦାନ କରାଯାଇଥାଏ ଏବଂ ପଦ୍ୟ-ଭାଗରେ ସାଧାରଣତଃ ମୂଳ ଭାବ ବା ବିଷୟର ଅବତାରଣା କରାଯାଇଥାଏ । ଏହି ପ୍ରସଙ୍ଗରେ ଏଠାରେ ଉଲ୍ଲେଖଯୋଗ୍ୟ ଯେ—ଭାଷା ଦୃଷ୍ଟିରୁ ଗଦ୍ୟ ଓ ପଦ୍ୟ ମଧ୍ୟରେ ପାର୍ଥକ୍ୟ ନିରୂପଣ କରାଯାଇ ପାରେ । କିନ୍ତୁ ସାହିତ୍ୟ ଦୃଷ୍ଟିରୁ ସେହିପରି ପାର୍ଥକ୍ୟ ନିରୂପଣ ନିରର୍ଥକ । ସାହିତ୍ୟକଳା ଦିଗରୁ ଦେଖିଲେ, ଗଦ୍ୟ-ପଦ୍ୟ ଉଭୟ ସମାନ । ଉଭୟଦ୍ୱାରା ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରାଯାଇ ପାରେ ।

ଚମ୍ପୂର ଆକାର ସମ୍ପର୍କରେ କୌଣସି ଆଳଙ୍କାରିକ ଅନୁଶାସନ ନାହିଁ । ଏହା କ୍ଷୁଦ୍ର ବା ବୃହତ୍ ଆକାର-ବିଶିଷ୍ଟ ହୋଇପାରେ । କିନ୍ତୁ ଏହା ବିଭିନ୍ନ ଉଚ୍ଛ୍ୱାସ ବା ଅଧ୍ୟାୟରେ ବିଭକ୍ତ ହେବା ବିଧେୟ ।

ସାଧାରଣତଃ ପୌରାଣିକ ବିଷୟବସ୍ତୁ ନେଇ ଚମ୍ପୂ ରଚିତ ହୋଇଥାଏ । ଅବଶ୍ୟ ଏହାର ବ୍ୟତିକ୍ରମ ସ୍ୱରୂପ କୌଣସି କୌଣସି ଚମ୍ପୂରେ ଐତିହାସିକ ବା କିମ୍ବଦନ୍ତୀମୂଳକ କଥାବସ୍ତୁ ଗୃହୀତ ହୋଇଥିବାର ଦେଖାଯାଏ ।

ମୁଖ୍ୟତଃ ଶୃଙ୍ଗାର ବା ବୀର ରସର ଉଦ୍‌ବୋଧନ ପାଇଁ ଚମ୍ପୂ କାବ୍ୟରେ କବି ଉଦ୍ୟମ କରିଥାଆନ୍ତି । ସ୍ଥଳବିଶେଷରେ ଶାନ୍ତ ରସର ଉଦ୍‌ବୋଧନ ପାଇଁ ମଧ୍ୟ ବ୍ୟବସ୍ଥା କରାଯାଇ ଥାଏ ।

ଚମ୍ପୂର ଅନ୍ୟାନ୍ୟ ସବୁ ଲକ୍ଷଣ ଖଣ୍ଡକାବ୍ୟର ଲକ୍ଷଣ ସଦୃଶ, ଅର୍ଥାତ୍ ଏହାର ଘଟଣା-ବୟନ, ଚରିତ୍ର ଚିତ୍ରଣ, ଦୃଶ୍ୟ-ରୂପାଦି ବର୍ଣ୍ଣନା ଖଣ୍ଡକାବ୍ୟର ସେହି ସେହି ବିଭବ ଭଳି ହୋଇଥାଏ ।

## ସଂସ୍କୃତ ସାହିତ୍ୟରେ ଚମ୍ପୂ

ସଂସ୍କୃତ ଭାଷାରେ ଶତାଧିକ ଚମ୍ପୂ କାବ୍ୟ ରଚିତ ହୋଇଥିବାର ଜଣାଯାଏ । ତନ୍ମଧ୍ୟରୁ ଉତ୍ତର ଭାରତରେ ପ୍ରାୟ ଛୟାଳିଶ ଖଣ୍ଡ ରଚିତ ଏବଂ ବାକି ସମସ୍ତ ଦକ୍ଷିଣ ଭାରତରେ ରଚିତ ହୋଇଛି ବୋଲି ଗବେଷକ ପଣ୍ଡିତମାନେ ଅନୁସନ୍ଧାନଦ୍ୱାରା ଜାଣି ପାରିଛନ୍ତି । ଦକ୍ଷିଣ ଭାରତରେ ଚମ୍ପୂ ରଚନା ଅଧିକ ହେବାର କାରଣ—ସେ ଅଞ୍ଚଳରେ ଭକ୍ତିଧାରାର ସୁପ୍ରସାର ଏବଂ ରାଜା-ମହାରାଜ ପ୍ରମୁଖଙ୍କର କବିମାନଙ୍କ ପ୍ରତି ପୃଷ୍ଠପୋଷକତା

ପ୍ରଦର୍ଶନ । * ବିଶେଷତଃ ଭକ୍ତି-ଆନ୍ଦୋଳନ ଚମ୍ପୂ କାବ୍ୟର ଉନ୍ମେଷ ଓ ବିକାଶ ଦିଗରେ ଯଥେଷ୍ଟ କାର୍ଯ୍ୟ କରିଛି । ପ୍ରଥମେ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଚମ୍ପୂ ରଚନାର ଆରମ୍ଭ ହୋଇଥିଲା; କିନ୍ତୁ ପରେ ସମ୍ପୂର୍ଣ୍ଣ ସାହିତ୍ୟିକ ଅଭିମୁଖ୍ୟରୁ ଏହାର ସୃଷ୍ଟି ସଂପଦ ସମୃଦ୍ଧ ହେଲା ବୋଲି ପଣ୍ଡିତମାନଙ୍କର ଧାରଣା । ଖ୍ରୀଷ୍ଟୀୟ ଷଷ୍ଠ-ସପ୍ତମ ଶତାବ୍ଦୀରୁ ଧାରାବାହିକ ଭାବରେ ସଂସ୍କୃତ ସାହିତ୍ୟରେ ଚମ୍ପୂ ରଚିତ ହୋଇ ଆସିଥିବାର ଜଣାପଡ଼େ ।

କେବଳ ପ୍ରାଚୀନ ଭାରତରେ ନୁହେଁ, ପ୍ରାଚୀନ ଚୀନ ଦେଶରେ ମଧ୍ୟ ବିଭିନ୍ନ କାବ୍ୟ ଗଦ୍ୟ-ପଦ୍ୟ ସମନ୍ୱୟରେ ରଚିତ ହୋଇଛି । ସେହିପରି ଆୟର୍ଲାଣ୍ଡର କେତେକ ଗଳ୍ପରେ ଉଭୟ ଗଦ୍ୟ-ପଦ୍ୟର ସମାବେଶ ଦେଖାଯାଏ । ପୃଥିବୀର ଅଧିକାଂଶ ଲୋକ-କାହାଣୀ ଗଦ୍ୟପଦ୍ୟମୟୀ ରଚନା ।

ସଂସ୍କୃତ ଭାଷାରେ ରଚିତ କେତେକ ବିଶିଷ୍ଟ ଚମ୍ପୂ କାବ୍ୟର ପରିଚୟ ଏଠାରେ ପ୍ରଦାନ କରାଯାଉଛି—(୧) ତ୍ରିବିକ୍ରମ ଭଟ୍ଟଙ୍କ ରଚିତ ସାତ ଗୋଟି ଉଚ୍ଛ୍ୱାସ-ବିଶିଷ୍ଟ 'ନଳଚମ୍ପୂ'; ଏଥିରେ ନଳ-ଦମୟନ୍ତୀଙ୍କର ପ୍ରଣୟ କାହାଣୀ ବର୍ଣ୍ଣିତ ହୋଇଛି । ତ୍ରିବିକ୍ରମ ଭଟ୍ଟ 'ମଦାଳସା ଚମ୍ପୂ' ନାମରେ ଅନ୍ୟ ଏକ କାବ୍ୟ ଲେଖିଥିବାର ଜଣାପଡ଼େ । (୨) ଦିଗମ୍ବର ଜୈନ ସୋମଦେବଙ୍କ ପ୍ରଣୀତ 'ଯଶସ୍ତିଲକ ଚମ୍ପୂ' ଏ କ୍ଷେତ୍ରରେ ଏକ ଉଲ୍ଲେଖନୀୟ ସୃଷ୍ଟି । ଏଥିରେ ଏକ ଅଦ୍ଭୁତ ଯଜ୍ଞର ବର୍ଣ୍ଣନା ସ୍ଥାନ ଲାଭ କରିଛି । (୩) ଭୋଜରାଜଙ୍କଦ୍ୱାରା ରଚିତ 'ଭୋଜ ଚମ୍ପୂ' ବା 'ରାମାୟଣ ଚମ୍ପୂ' ଏକ ଉଚ୍ଚକୋଟୀର ସୃଷ୍ଟି । (୪) ଅଭିନବ କାଳିଦାସଙ୍କ ରଚିତ 'ଭାଗବତ ଚମ୍ପୂ' ଛଅଗୋଟି ଉଚ୍ଛ୍ୱାସରେ ବିଭକ୍ତ । ନାଗକନ୍ୟା ଉଦୟସୁନ୍ଦରୀ ଏବଂ ରାଜପୁତ୍ର ମଳୟବାହନଙ୍କ ପ୍ରଣୟ-ଉପାଖ୍ୟାନ ଏହାର ଉପଜୀବ୍ୟ । (୫) ଅନନ୍ତ ଭଟ୍ଟଙ୍କର 'ଭାରତ ଚମ୍ପୂ' ମହାଭାରତର କଥାବସ୍ତୁ ଘେନି ରଚିତ । (୬) ଶେଷକୃଷ୍ଣଙ୍କଦ୍ୱାରା ରଚିତ 'ପାରିଜାତ ହରଣ ଚମ୍ପୂ' ପାଞ୍ଚଟି ଅଧ୍ୟାୟରେ ବିଭକ୍ତ । ସ୍ୱର୍ଗରୁ ଶ୍ରୀକୃଷ୍ଣଙ୍କର ପାରିଜାତ ହରଣ ଘଟଣା ଏଥିରେ ବର୍ଣ୍ଣିତ ହୋଇଛି । (୭) ଜୀବ ଗୋସ୍ୱାମୀଙ୍କଦ୍ୱାରା ପ୍ରଣୀତ 'ଗୋପାଳ ଚମ୍ପୂ' ଏବଂ (୮) କବି କର୍ଣ୍ଣପୂରଙ୍କ

* ଏ ସଂପର୍କରେ ଡକ୍ଟର ଛବିନାଥ ତ୍ରିପାଠୀଙ୍କର 'ଚମ୍ପୂ କାବ୍ୟକା ଆଲୋଚନାତ୍ମକ ଏବଂ ଐତିହାସିକ ଅଧ୍ୟୟନ'—ଚୌଖମ୍ବା ବିଦ୍ୟାଭବନ, ବାରଣାସୀ (୧୯୬୫) ଗ୍ରନ୍ଥ ଦ୍ରଷ୍ଟବ୍ୟ ।

ରଚିତ 'ଆନନ୍ଦ ବୃନ୍ଦାବନ ଚମ୍ପୂ' ବୈଷ୍ଣବମାନଙ୍କର ଆଦରଣୀୟ କାବ୍ୟ । (୯) ନୀଳକଣ୍ଠ ଦୀକ୍ଷିତଙ୍କଦ୍ୱାରା ରଚିତ 'ନୀଳକଣ୍ଠ ବିଜୟ ଚମ୍ପୂ' । ପାଞ୍ଚ ଅଧ୍ୟାୟବିଶିଷ୍ଟ ଏହି କାବ୍ୟରେ ଶିବଙ୍କର ମହତ୍ତ୍ୱ ପ୍ରତିପାଦିତ ହୋଇଛି । (୧୦) କବି ବେଙ୍କଟାଧ୍ୱରୀଙ୍କ ରଚିତ 'ବରଦାଭ୍ୟୁଦୟ', 'ବିଶ୍ୱଗୁଣାଦର୍ଶ' 'ଶ୍ରୀନିବାସ ଚମ୍ପୂ' ପ୍ରଭୃତି ଗୁଡ଼ିଏ ଗୋଟି ଚମ୍ପୂ କାବ୍ୟ ଉତ୍କୃଷ୍ଟ ସାହିତ୍ୟକୃତି ହିସାବରେ ପରିଗଣିତ ହୁଏ ।

ଆମ ଓଡ଼ିଶାରେ ସଂସ୍କୃତ ଭାଷାରେ କେତେକ ଚମ୍ପୂ କାବ୍ୟ ରଚିତ ହୋଇଥିବାର ଜଣା ପଡ଼ୁଛି । ସେହି ପ୍ରାଥମିକ ଚମ୍ପୂ ରଚୟିତାମାନଙ୍କ ମଧ୍ୟରେ ଅଷ୍ଟାଦଶ ଶତାବ୍ଦୀର ଗଞ୍ଜାମ ଅଞ୍ଚଳସ୍ଥ କବି ଚକ୍ରପାଣି ପଟ୍ଟନାୟକ ଅନ୍ୟତମ । ତାଙ୍କ ରଚନାରେ ତଥା ସାଧାରଣ କଥାବାର୍ତ୍ତାରେ ବକ୍ରୋକ୍ତି ପୂରି ରହିଥିବାରୁ ତାଙ୍କୁ 'ବକ୍ରବାକ୍' ନାମରେ ଅଭିହିତ କରାଯାଇଥିଲା । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ବିଷୟରେ ଲିଖିତ ତାଙ୍କର 'ଗୁଣ୍ଡିଚା ଚମ୍ପୂ' ଏକ ସୁପରିଚିତ ରଚନା । ଏହା ବ୍ୟତୀତ ଓଡ଼ିଶାର ଅନ୍ୟାନ୍ୟ ସଂସ୍କୃତ ଚମ୍ପୂ ରଚନାଗୁଡ଼ିକ ହେଉଛି—ବାସୁଦେବ ରଥ ସୋମଯାଜୀଙ୍କଦ୍ୱାରା ଲିଖିତ 'ଗଙ୍ଗବଂଶାନୁଚରିତ ଚମ୍ପୂ' (୧୮ଶ ଶତାବ୍ଦୀ), ନୀଳକଣ୍ଠ ମିଶ୍ରଙ୍କ ରଚିତ 'ଭଞ୍ଜ ମହୋଦୟ ଚମ୍ପୂ' (୧୮ଶ ଶତାବ୍ଦୀ), କବିରାଜ ଭଗବାନ ବ୍ରହ୍ମାଙ୍କ ରଚିତ 'ମୃଗୟା ଚମ୍ପୂ' ଏବଂ 'ଗୁଣ୍ଡିଚାବିଜୟ ଚମ୍ପୂ' (୧୮ଶ ଶତାବ୍ଦୀ), ନୀଳାମ୍ବର ଆଚାର୍ଯ୍ୟଙ୍କଦ୍ୱାରା ରଚିତ 'ଚନ୍ଦନଯାତ୍ରା ଚମ୍ପୂ' (୧୮ଶ ଶତାବ୍ଦୀ), ଭୁବନେଶ୍ୱର ମିଶ୍ର ବଡ଼ପଣ୍ଡାଙ୍କଦ୍ୱାରା ରଚିତ 'ଆନନ୍ଦ ବୃନ୍ଦାବନ ଚମ୍ପୂ' (୧୯ଶ ଶତାବ୍ଦୀ), ପୁରୁଷୋତ୍ତମ ରଥଙ୍କ ଦ୍ୱାରା ଲିଖିତ 'ବାମନ ଚମ୍ପୂ (୧୮୯୬) ଯଦୁନାଥ ସିଂହଙ୍କ ପ୍ରଣୀତ 'ପ୍ରେମସାଗର ଚମ୍ପୂ' (୧୮୯୭), ସଦାଶିବ ମିଶ୍ର ଶର୍ମାଙ୍କ ରଚିତ 'ଚନ୍ଦନ ଚମ୍ପୂ' (୧୯୦୦), ସୁଦର୍ଶନ ମିଶ୍ର ନ୍ୟାୟରତ୍ନଙ୍କଦ୍ୱାରା ରଚିତ 'ପରିଣୟ ଚମ୍ପୂ' (୧୯୧୩), ଭାଗୀରଥି ମିଶ୍ରଙ୍କ ପ୍ରଣୀତ 'ନବକିଶୋର ଚମ୍ପୂ (୧୯୧୩) ପ୍ରଭୃତି । * ଏଥିରୁ ଜଣାପଡ଼େ ଯେ ଆମ ରାଜ୍ୟରେ ସଂସ୍କୃତ ଚମ୍ପୂ ରଚନାର ଏକ ପୁଷ୍କଳ ପରମ୍ପରା ବିଦ୍ୟମାନ ଥିଲା ।

---

* ଓଡ଼ିଶାର ସଂସ୍କୃତ ଲେଖା ଓ ଲେଖକ—ପଣ୍ଡିତ ନୀଳମଣି ମିଶ୍ର, ଓଡ଼ିଶା ସାହିତ୍ୟ ଏକାଡେ଼ମୀ, ଭୁବନେଶ୍ୱର (୧୯୬୨) ଏବଂ ଓଡ଼ିଆ ଗୀତିକାବ୍ୟ—ଡଃ ଜାନକୀବଲ୍ଲଭ ମହାନ୍ତି, ଗ୍ରନ୍ଥମନ୍ଦିର, କଟକ (୧୯୬୬) ଏ ପ୍ରସଙ୍ଗରେ ଦ୍ରଷ୍ଟବ୍ୟ ।

## ଓଡ଼ିଆ ସାହିତ୍ୟରେ ଚମ୍ପୂ

ସେହି ପରମ୍ପରାରେ ଓଡ଼ିଆ ଭାଷାରେ ଚମ୍ପୂ ରଚନା କରିବା ସହଜ ଓ ସୁକର ହେଲା । ଆମର କବିମାନେ ଆପଣା ମାତୃଭାଷାରେ ଏହି ସଂସ୍କୃତ କାବ୍ୟ ଶୈଳୀର ଅନୁସରଣ ଓ ଅନୁବର୍ତ୍ତନ କଲେ । ପ୍ରଥମେ କିଏ ଏବଂ କେବେ ଓଡ଼ିଆ ଚମ୍ପୂ ରଚନା ପ୍ରବର୍ତ୍ତନ କରିଥିଲେ, ତାହା ନିର୍ଦ୍ଦିଷ୍ଟ ଭାବରେ ବୋଲିଯାଇ ପାରିବ ନାହିଁ । ତଥାପି ଏହା ଦୃଢ଼ତାର ସହିତ ବୋଲିଯାଇ ପାରେ ଯେ—କବିସୂର୍ଯ୍ୟ ବଳଦେବଙ୍କ ପୂର୍ବରୁ ଖୁବ୍ କମ୍ ସଂଖ୍ୟକ ଓଡ଼ିଆ ଚମ୍ପୂ ରଚିତ ହୋଇଥିଲା । କିନ୍ତୁ କବିସୂର୍ଯ୍ୟଙ୍କ ପରଠାରୁ ଆଜି ପର୍ଯ୍ୟନ୍ତ ଦଶ ଖଣ୍ଡରୁ ଅଧିକ ଚମ୍ପୂ କାବ୍ୟ ରଚିତ ହୋଇଥିବାର ଜଣାପଡ଼ୁଛି । ତେଣୁ କବିସୂର୍ଯ୍ୟ ଯେ ଚମ୍ପୂ ଶୈଳୀକୁ ଆମ ସାହିତ୍ୟରେ ଜନପ୍ରିୟ ଓ ସୁପ୍ରତିଷ୍ଠିତ କରାଇ ଦେଲେ, ଏଥିରେ ସନ୍ଦେହ ନାହିଁ । ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ— ସଂସ୍କୃତ ତଥା ଓଡ଼ିଆ ଉଭୟ ଭାଷାରେ ଆମ ରାଜ୍ୟରେ ଯେଉଁ ସବୁ ଚମ୍ପୂ ରଚିତ ହୋଇଥିବାର ସନ୍ଧାନ ମିଳୁଛି, ସେଗୁଡ଼ିକ ଅଷ୍ଟାଦଶ ଶତାବ୍ଦୀ ପୂର୍ବର ରଚନା ନୁହେଁ । ଅଥଚ ଭାରତରେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରୁ ଚମ୍ପୂ ରଚନାର ସୂତ୍ରପାତ ହୋଇଥିବା ପଣ୍ଡିତମାନଙ୍କର ମତ ।

କବିସୂର୍ଯ୍ୟ ବଳଦେବଙ୍କ ପୂର୍ବରୁ ତଥା ପରେ ରଚିତ ହୋଇଥିବା ବିଭିନ୍ନ ଓଡ଼ିଆ ଚମ୍ପୂ—

୧ । ରାମାୟଣ ଚମ୍ପୂ—କବି ବନମାଳୀଙ୍କ ଦ୍ୱାରା ରଚିତ, କିନ୍ତୁ କବି ହରିଙ୍କ ନାମରେ ଭଣିତ । ଭୋଜରାଜଙ୍କ ରାମାୟଣ ଚମ୍ପୂର ଅନୁସରଣରେ ଏହା ୧୭୫୪ ମସିହାରେ ଲେଖା ଯାଇଥିବାର ଜଣାଯାଏ ।

୨ । ଝୁଲଣ ଚମ୍ପୂ— କିଶୋରଚନ୍ଦ୍ର ରାଜେନ୍ଦ୍ର (୧୯ଶ ଶତାବ୍ଦୀ)

୩ । ବୃନ୍ଦାବନଚନ୍ଦ୍ରାନନ୍ଦ ଚମ୍ପୂ—ଗୋବିନ୍ଦ ରାୟଗୁରୁ (୧୯ଶ ଶତାବ୍ଦୀ)

୪ । ଜୀବନ ଚମ୍ପୂ—ଦାମୋଦର ପଟ୍ଟନାୟକ (୧୮୮୮)

୫ । ବୃନ୍ଦାବନଚନ୍ଦ୍ରବିନୋଦ ଚମ୍ପୂ—ମହେନ୍ଦ୍ରସିଂହସାମନ୍ତ (୧୮୯୫)

୬ । ଜାଗୀୟ ଚଂପୂ—ସାମନ୍ତ ଶ୍ୟାମବନ୍ଧୁ ଦାସ (୧୯୦୮)

୭ । ମୋହନାନନ୍ଦ ଚଂପୂ—ନିତ୍ୟାନନ୍ଦ ପ୍ରକାଶ ବ୍ରହ୍ମଗୁରୁ (୧୯୨୭)

୮ । ମହିମା ଭଜନ ଚଂପୂ—ଅନନ୍ତ ଚରଣ ବାବା (୧୯୩୨)

୯ । କିଶୋରୀବିଳାସ ଚଂପୂ—ନବକିଶୋର ମହାନ୍ତି (୧୯୩୩)
୧୦ । ସାମନ୍ତ ସମ୍ମୋହନ ଚଂପୂ—ନିର୍ଧୂମ ଧୂମକେତୁ ମିସ୍ତ୍ରୀ (୧୯୩୬)
୧୧ । ଚଟକ ଚନ୍ଦ୍ରହାସ ଚଂପୂ—କପିବର ହନୁମନ୍ତ ନକଲ ନବିସ୍ —କାନ୍ତକବି ଲକ୍ଷ୍ମୀକାନ୍ତ (୧୯୪୩)
୧୨ । ଜୀବନ ଚଂପୂ—ଲଳମୋହନ ପଟ୍ଟନାୟକ (୧୯୪୭)
୧୩ । କିଶୋରୀଚନ୍ଦ୍ରାନନ୍ଦ ଚଂପୂ—ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ (୧୯୫୭)

ସଂସ୍କୃତ ଚଂପୂ କାବ୍ୟର ସ୍ୱରୂପ-ପ୍ରକୃତି ଓଡ଼ିଆ ଚଂପୂରେ ଭଲ ଭାବରେ ଅନୁସୃତ ହୋଇ ନାହିଁ । ଚଂପୂ ଶୈଳୀଟି ସାମାନ୍ୟ ପରିବର୍ତ୍ତିତ ଆକାରରେ ଆମ ସାହିତ୍ୟରେ ଗୃହୀତ ହୋଇଛି । ଓଡ଼ିଆ ଚଂପୂଗୁଡ଼ିକ ସାଧାରଣତଃ ଉଚ୍ଛ୍ୱାସ ବା ଅଧ୍ୟାୟରେ ବିଭକ୍ତ ନୁହେଁ । ଅଧିକାଂଶ ଓଡ଼ିଆ ଚଂପୂ କେବଳ ପଦ୍ୟମୟ; ଗଦ୍ୟ-ପଦ୍ୟର ମିଶ୍ର ରଚନା ନୁହେଁ । ଏହାର ଅଳ୍ପ କେତୋଟି ବ୍ୟତିକ୍ରମ ହେଉଛି—ମହେନ୍ଦ୍ର ସିଂହ ସାମନ୍ତଙ୍କର 'ବୃନ୍ଦାବନଚନ୍ଦ୍ର ବିନୋଦ ଚଂପୂ', କାନ୍ତକବି ଲକ୍ଷ୍ମୀକାନ୍ତଙ୍କର 'ଚଟକ ଚନ୍ଦ୍ରହାସ ଚଂପୂ', ନିର୍ଧୂମ ଧୂମକେତୁ ମିସ୍ତ୍ରୀଙ୍କ 'ସାମନ୍ତ ସମ୍ମୋହନ ଚଂପୂ' ପ୍ରଭୃତି । ଏହି କେତୋଟି ମାତ୍ର ଚଂପୂ ଗଦ୍ୟ-ପଦ୍ୟମୟ ରଚନା । 'ବୃନ୍ଦାବନଚନ୍ଦ୍ରବିନୋଦ'ରେ ରାଧା, କୃଷ୍ଣ, ଲଳିତା, ମଧୁମଙ୍ଗଳ ପ୍ରମୁଖଙ୍କର ଉକ୍ତି-ପ୍ରତ୍ୟୁକ୍ତି ରୂପେ ୩୪ ଗୋଟି ସଙ୍ଗୀତ ଏବଂ ପ୍ରତ୍ୟେକ ସଙ୍ଗୀତ ପୂର୍ବରୁ ଗଦ୍ୟାଂଶ ସମାବେଶ କରାଯାଇଛି । 'ଚଟକ ଚନ୍ଦ୍ରହାସ ଚଂପୂ' ତଥା 'ସାମନ୍ତ ସମ୍ମୋହନ ଚଂପୂ'ରେ ପାତ୍ର-ପାତ୍ରୀ ଭିନ୍ନ ହେଲେହେଁ, ସେହିପରି ଓଡ଼ିଆ ସଙ୍ଗୀତ ଓ ଗଦ୍ୟାଂଶ ସ୍ଥାନ ଲାଭ କରିଛି । ଉଦାହରଣ ସ୍ୱରୂପ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ରଙ୍ଗରସ-ପରିପୂର୍ଣ୍ଣ 'ଚଟକ ଚନ୍ଦ୍ରହାସ ଚଂପୂ' କାବ୍ୟରେ—

"ମଙ୍ଗଳାଚରଣ—ବିଂଶ ଶତାବ୍ଦୀର ନବ୍ୟ ସଭ୍ୟା-ସଭ୍ୟ ଦଳ
ନିର୍ବାଧ ବିତାସେ ମାରନ୍ତି ଯେ ଶୂନଚକ୍ର
ହାଲ୍ ଫେସନର ଗୁରୁ-କାରୁ-କଳାବିତ୍
ବିକାଶି ଆଲୋକ ଦେଶେ ସାଧନ୍ତୁ ମଙ୍ଗଳ ॥

ନିରଙ୍କୁଶ ସ୍ୱାଧୀନତାବାଞ୍ଛା ସଜା, ଗଜା, ନିତ୍ୟ ତାଜା, ମଜାଲୁଣ୍ଠନ-କାରୀ ଆଧୁନିକ ଓ ଆଧୁନିକାଗଣ କେଉଁଠି—ଆଉ ଆମ୍ଭ ଭଳି ପଚିସଡ଼ା ବୁଢ଼ା

*

ହୁଡ଼ା ଖଡ଼ାଖିଆ କବି ବା କେଉଁଠି ! ଆମ୍ଭେ ଯେ ଏହାଙ୍କ ମୁକ୍ତ ବିହାରଲୀଳା ବର୍ଣ୍ଣନ କରିବାକୁ ଯାଉଛୁଁ, ଏଥିରେ ଆମ୍ଭ କର୍ମକୁ ତଉଡ଼ାଝିଡ଼ା, ଆଖିକଡ଼ା, କାନମୋଡ଼ା ଏପରିକି ବଖତ ପଡ଼ିଲେ ଘୋଡ଼ା କୋରଡ଼ା ଛଡ଼ା ଆଉ କଣ ମିଲ୍ଡ଼ା ହୋଇପାରେ ?

ତଥାପି ଏ ଯୁଗର 'ହାଲୁକା ହାଉସ୍' ଦେଶରୁ ସମସ୍ତ ରସିକ ଗ୍ରାହକଙ୍କୁ ଉଡ଼ାଇ ନେଇ ନାହିଁ ଏବଂ ବିଜ୍ଞାନ-ବିଜଡ଼ିତ ହାଲ୍ ସାହିତ୍ୟରୁ ହାସ୍ୟରସ ଏକାବେଳେ ବିଦାୟ ଗ୍ରହଣ କରି ନାହିଁ, ଏହି ଭରସାରେ ଏଭଳି ତିଷ୍ କୁଠାରେ ମନ ବଳାଇଲି ।

(କ)

କି ହେଲି ରେ, କହି ତ ନୁହଁଇ ଭାରତୀରେ ।
କାଲି ଯା କେନାଲ୍ କୂଳେ        କଳନା କଲି ଏ ଡୋଳେ
କଳାଜାମ କାର ମୂରତି ରେ ॥

× × × ×

କଲେ ବିଡ଼ିଟିଏ ଜାକି        କଠମଠ କରି ଆଖି
କାଢ଼ୁଥିଲି ଧୂଆଁ କି ଘାତରେ ॥
କାମୁଡ଼ି ତା କୁଞ୍ଚିକାନ        କୁଣ୍ଢାଇ 'କ୍ୟାଡ଼୍ ଶୁ' ବେନି
କୋଡ଼ି ହୋଇ ମୁ ଣ୍ଡ ମରନ୍ତି ରେ ॥
କାନ୍ତ ବୋଲି କହିଁ କହିଁ        କାନ୍ଦିଲି କେତେ କୁହାଇ
କୁଆବୁଆ ହୋଇ ପୀରତି ରେ ॥

ରେ ସଖି, କାଲି ନବ୍ୟ ଫେସନର ପ୍ରତିମୂର୍ତ୍ତି କାନ୍ତ କଳା କୁଶଳୀ ଯେହି କମନୀୟ ରୂପ ଦେଖିଲି ବେଳୁ ମୋ ମନମୀନ ତାଙ୍କର ବଡ଼ଶୀ ମୁନରେ ବନ୍ଧା ହୋଇ ରହିଛି । ପାଠଶାଠ କମ୍ବା ଖେଳ କୌତୁକ କିଛି ଭଲ ଲାଗୁ ନାହିଁ । ଯାହା କଲେ, ଯେଉଁଠିକି ଗଲେ, ତାଙ୍କର ସେ ରସମୟ ବିହାରଲୀଳା ଆଖି ଆଗରେ ନାଚି ଯାଉଛି । ସଖି, ସେ କିଏ ? ମୋର ହେଲି କିସ ? ମୁଁ କରିବି କଣ କହନା !

ମିସ୍ ନବୀନାଙ୍କର ଏ କଥା ଶୁଣି ମିସ୍ ସ୍ୱାଧୀନା କହିଲେ—

(ଖ)

ଖଗପ ତୁ ହେଲୁ ରେ ।
ଖେଳାଖେଳା ଖୋଲା ଆଖି କ ସାହସ କଲୁ ରେ ॥
ଖଞ୍ଜଣେଠଇଁ ଜାଣୁ ଜାଣୁ ତଣ୍ଟି ପଡାଇଲୁ ରେ
ଖଚଡ଼ା ଜନେ ଗୁପତ ବାଟ ବତାଇଲୁ ରେ ॥" ଇତ୍ୟାଦି

ଓଡ଼ିଆ ଚଂପୂ କାବ୍ୟଗୁଡ଼ିକ ସାଧାରଣତଃ ଚଉତିଶା ଆକାରରେ ରଚିତ; ଅର୍ଥାତ୍ କ-ଠାରୁ କ୍ଷ-ପର୍ଯ୍ୟନ୍ତ ଚଉତିରିଶ ଗୋଟି ବ୍ୟଞ୍ଜନ ବର୍ଣ୍ଣକୁ କ୍ରମାନ୍ୱୟରେ ବ୍ୟବହାର କରି ଚଉତିରିଶଟି ଚଉପଦୀ ଏଥିରେ ସନ୍ନିବେଶିତ ହୋଇଥାଏ । ଗୋଟିଏ ବ୍ୟଞ୍ଜନ ବର୍ଣ୍ଣକୁ ଘେନି ଗୋଟିଏ ଗୀତ ବା ଚଉପଦୀ; ସେହି ଚଉପଦୀର ପ୍ରତ୍ୟେକ ଚରଣ ଆରମ୍ଭରେ ପୁଣି ସେହି ନିର୍ଦ୍ଦିଷ୍ଟ ବ୍ୟଞ୍ଜନ ବର୍ଣ୍ଣଟି ପ୍ରୟୋଗ କରି ଯାଇଥାଏ । ସାଧାରଣ ଚଉତିଶା ଓ ଚଂପୂର ଚଉତିଶା ମଧ୍ୟରେ ଗୋଟିଏ ପାର୍ଥକ୍ୟ ରହିଛି । ସାଧାରଣ ଚଉତିଶାଗୁଡ଼ିକ ଗୋଟିଏ ନିର୍ଦ୍ଦିଷ୍ଟ ରାଗ ବା ବୃତ୍ତରେ ରଚିତ, କିନ୍ତୁ ଚମ୍ପୂର ଚଉତିଶା-ଶୈଳୀରେ ରଚିତ ଚଉପଦୀଗୁଡ଼ିକ ବିଭିନ୍ନ ରାଗ-ରାଗିଣୀଯୁକ୍ତ । ଫଳରେ ସାଧାରଣ ଚଉତିଶାର ଆବୃତ୍ତି ବା ଗାୟନଠାରୁ ଚମ୍ପୂର ଗାୟନ ବା ଆବୃତ୍ତି ବୈଚିତ୍ର୍ୟ-ମଣ୍ଡିତ ଓ ଶ୍ରବଣସୁଖଦାୟୀ ହୋଇଥାଏ । କବିସୂର୍ଯ୍ୟ ବଳଦେବ ଚମ୍ପୂ ମଧ୍ୟରେ ଏହି ଚଉପଦୀ-ସମ୍ବଳିତ ଚଉତିଶା ରୀତିର ପ୍ରବର୍ତ୍ତକ ବୋଲି ମନେ ହୁଏ । ପରବର୍ତ୍ତୀ ପ୍ରାୟ ସମସ୍ତ ଚମ୍ପୂ-ରଚୟିତା ଏହି ରୀତି ଅନୁସରଣ କରି ଥିବାର ଦେଖାଯାଏ ।

କେତେକ ଓଡ଼ିଆ ଚମ୍ପୂରେ ଖଣ୍ଡକାବ୍ୟ-ସୁଲଭ ଏକ ନିର୍ଦ୍ଦିଷ୍ଟ ଘଟଣା ବା କଥାବସ୍ତୁ ଗୃହୀତ ହୋଇ ନ ଥିବାର ପରିଲକ୍ଷିତ ହୁଏ; କୌଣସି ଚରିତ୍ର ମଧ୍ୟ ତହିଁରେ ସ୍ଥାନ ପାଇ ନାହିଁ । ଉଦାହରଣ ସ୍ୱରୂପ—ଲଲମୋହନ ପଟ୍ଟନାୟକଙ୍କର 'ଜୀବନ ଚମ୍ପୂ' । ଏହା ଶାନ୍ତ ରସର ଉଦ୍‌ବୋଧନକାରୀ; ଏଥିରେ ଗଦ୍ୟାଂଶ ସହ ଚଉତିରିଶ ଗୋଟି ଭକ୍ତି-ଗୀତିକା ସନ୍ନିବେଶିତ ହୋଇଛି ମାତ୍ର ।

## କିଶୋରଚନ୍ଦ୍ରାନନ୍ଦ ଚମ୍ପୂ

ଏହା ନିଃସନ୍ଦେହରେ କବିସୂର୍ଯ୍ୟ ବଳଦେବଙ୍କର ସର୍ବଶ୍ରେଷ୍ଠ ସାହିତ୍ୟ-କୃତି । କବିସୂର୍ଯ୍ୟଙ୍କର ଆଠଗଡ଼ ଅବସ୍ଥାନ କାଳରେ ଅର୍ଥାତ୍ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ମଧ୍ୟରେ ଏହି ଚମ୍ପୂ କାବ୍ୟଟି ରଚିତ ହୋଇଥିବାର ନିର୍ଦ୍ଧାରଣ କରିଯାଇ ପାରେ । କବିସୂର୍ଯ୍ୟ 'ଚନ୍ଦ୍ରକଳା' ଭଳି କାବ୍ୟ ନ ଲେଖି ସହସା ଚମ୍ପୂ ରଚନା ପାଇଁ ମନ ବଳାଇଲେ କାହିଁକି ? ଏହାର କେତେକ କାରଣ ଏଠାରେ ନିରୂପଣ କରିଯାଇ ପାରେ । ପ୍ରଥମତଃ, ସଂସ୍କୃତ ସାହିତ୍ୟରେ ଗଭୀର ପ୍ରବେଶ ଥିବାରୁ ଚମ୍ପୂ ଶୈଳୀ ସହିତ କବିସୂର୍ଯ୍ୟ ପରିଚିତ ଥିଲେ ଏବଂ ସେହି ଶୈଳୀଟି ସମ୍ଭବତଃ ତାଙ୍କୁ ଖୁବ୍ ଆକୃଷ୍ଟ କରିଥିଲା । ସାହିତ୍ୟ-ସୃଷ୍ଟି କ୍ଷେତ୍ରରେ ନୂଆ ନୂଆ ଶୈଳୀର ପରୀକ୍ଷା-ନିରୀକ୍ଷା କରିବା କବିମାନଙ୍କର ଏକ ସ୍ୱାଭାବିକ ପ୍ରବୃତ୍ତି । ଆମ ରାଜ୍ୟରେ କବିସୂର୍ଯ୍ୟଙ୍କ ପୂର୍ବରୁ ସଂସ୍କୃତ ବା ଓଡ଼ିଆ ଭାଷାରେ ବିଶେଷ ଚମ୍ପୂ କାବ୍ୟ ରଚିତ ହୋଇ ନ ଥିଲା । ତେଣୁ କବିସୂର୍ଯ୍ୟ ସେହି ଚମ୍ପୂ ଶୈଳୀରେ କାବ୍ୟ ରଚନା ପାଇଁ ଆଗ୍ରହାନ୍ୱିତ ହୋଇଥିଲେ । ଦ୍ୱିତୀୟରେ, କବିଙ୍କର ତତ୍କାଳୀନ ପୃଷ୍ଠପୋଷକ ଆଠଗଡ଼ ରାଜା ବାଲୁକେଶ୍ୱର ହରିଚନ୍ଦନ ଜଗଦ୍ଦେବ ଥିଲେ ବୈଷ୍ଣବ । ସେ ମଧ୍ୟ ସଂସ୍କୃତଜ୍ଞ ଏବଂ ସାହିତ୍ୟ-ସଙ୍ଗୀତ-ରସିକ ଥିଲେ । ରାଧାକୃଷ୍ଣ ଲୀଳା ତାଙ୍କ ପକ୍ଷରେ ଥିଲା ପରମ ଶ୍ରଦ୍ଧାର ବିଷୟ । ତାଙ୍କର ପ୍ରୀତି ଓ ସନ୍ତୋଷ ପାଇଁ କବିସୂର୍ଯ୍ୟ ବଳଦେବ ଚମ୍ପୂ ଶୈଳୀରେ ରାଧାକୃଷ୍ଣଙ୍କର ପ୍ରଣୟଲୀଳା ବର୍ଣ୍ଣନା କରିବାକୁ ପ୍ରବୃତ୍ତ ହୋଇଥିବା ଅତ୍ୟନ୍ତ ସ୍ୱାଭାବିକ ।

'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ସମ୍ପ୍ରତି ଓଡ଼ିଆ ଚଂପୂ ରୂପେ ପ୍ରତିଷ୍ଠା ପାଇଥିଲେ ମଧ୍ୟ, ଏହା ମୂଳତଃ ଓଡ଼ିଆ କି ସଂସ୍କୃତରେ ରଚିତ ହୋଇଥିଲା, ଏ ବିଷୟରେ ସମୀକ୍ଷକମାନେ ଏକମତ ହୋଇ ନ ଥିବାର ଦେଖାଯାଏ । 'କବିସୂର୍ଯ୍ୟ ଗ୍ରନ୍ଥାବଳୀ'ର ବିଜ୍ଞ ସମ୍ପାଦକ ଶ୍ରୀ କୁଳମଣି ଦାଶଙ୍କ ମତରେ—ଓଡ଼ିଆ ଭାଷାରେ ହିଁ ଚମ୍ପୂ ରଚନା କରିବା କବିସୂର୍ଯ୍ୟଙ୍କର ଲକ୍ଷ୍ୟ, ମାତ୍ର ଓଡ଼ିଆରେ ମାର୍ଜିତ ଗଦ୍ୟ ଭାଷାର ଅଭାବ ଦେଖି ଚମ୍ପୂର ଗଦ୍ୟାଂଶକୁ ସେ ସଂସ୍କୃତ ଭାଷାରେ ଲେଖିଲେ ଏବଂ କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ସକାଶେ ତାହା ସହିତ ଗୋଟିଏ ଗୋଟିଏ ସଂସ୍କୃତ ଶ୍ଳୋକ ସଂଯୁକ୍ତ କଲେ । *

---

* କବିସୂର୍ଯ୍ୟ ଗ୍ରନ୍ଥାବଳୀ—ପୃଷ୍ଠା ୫୨—୫୭

ଏହି ଅଭିମତର ଯୁକ୍ତିଯୁକ୍ତତା ସମ୍ପର୍କରେ ପ୍ରଶ୍ନ ଉଠିପାରେ । କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ସକାଶେ ସଂସ୍କୃତ ଶ୍ଳୋକ ପ୍ରୟୋଗ ଏବଂ ମାର୍ଜିତ ଓଡ଼ିଆ ଗଦ୍ୟର ଅଭାବରୁ ସଂସ୍କୃତ ଗଦ୍ୟାଂଶ ବ୍ୟବହାର—ଯୁକ୍ତିଟି ବଳିଷ୍ଠ ମନେ ହେଉ ନାହିଁ । ଓଡ଼ିଆ ଭାଷାର ଗୀତ ବା ଚଉପଦୀଗୁଡ଼ିକ ହିଁ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' କାବ୍ୟର ଶ୍ରେଷ୍ଠ ସୌନ୍ଦର୍ଯ୍ୟମୟ ଅଂଶ; ଅଧିକ ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ ସଂସ୍କୃତ ଶ୍ଳୋକର କୌଣସି ଆବଶ୍ୟକତା ନ ଥିଲା । କବି ଇଚ୍ଛା କରିଥିଲେ, ଓଡ଼ିଆ ଗଦ୍ୟ ବା ବଚନିକା ସମାବେଶଦ୍ୱାରା ସେହି ଆବଶ୍ୟକତା ପୂରଣ କରି ପାରିଥାଆନ୍ତେ । ପୁଣି ଯେଉଁ କବି ଓଡ଼ିଆ ଗଦ୍ୟରେ 'ହାସ୍ୟ କଲ୍ଲୋଳ' ରଚନା କରୁଛନ୍ତି, ତାଙ୍କ ପକ୍ଷରେ ମାର୍ଜିତ ଓଡ଼ିଆ ଗଦ୍ୟର ଅଭାବ ଅନୁଭବ ସମ୍ଭବ କି ? ପ୍ରକୃତରେ, ଊନବିଂଶ ଶତାବ୍ଦୀ ପ୍ରାରମ୍ଭବେଳକୁ ଆମ ମାତୃଭାଷାରେ ମାର୍ଜିତ ଗଦ୍ୟ ରଚନାର ଅଭାବ ନ ଥିଲା । ରୁଦ୍ରସୁଧାନିଧି, ଚତୁର ବିନୋଦ କଥା ପ୍ରଭୃତି ସାହିତ୍ୟିକ ଗଦ୍ୟ ଗ୍ରନ୍ଥ—ବିଶେଷତଃ ଦକ୍ଷିଣ ଓଡ଼ିଶାରେ ଭଞ୍ଜ କବିଙ୍କ 'ଲାବଣ୍ୟବତୀ' କାବ୍ୟର ଏକାଧିକ ଗଦ୍ୟ-ଟୀକା ଗ୍ରନ୍ଥରୁ ଓଡ଼ିଆ ଗଦ୍ୟର ବିକଶିତ ରୂପ ପରିଲକ୍ଷିତ ହୁଏ । ତେଣୁ କବିସୂର୍ଯ୍ୟ ମୂଳତଃ ସଂସ୍କୃତ ଭାଷାରେ ଚମ୍ପୂ କାବ୍ୟଟି ରଚନା କରିଥିଲେ; ପରେ ତହିଁରେ ଚଉତିଶା ରୀତିରେ ଚଉତିରିଶ ଗୋଟି ଓଡ଼ିଆ ଗୀତ ବା ଚଉପଦୀ ସନ୍ନିବେଶିତ କରିଛନ୍ତି । ଗଦ୍ୟଭାଗ ସହିତ ଶ୍ଳୋକଗୁଡ଼ିକୁ ସେ ସଂସ୍କୃତ ଭାଷାରେ ଲେଖିଥିବାରୁ ଏହି ଧାରଣା ବଳବତ୍ତର ହେଉଛି, ଅର୍ଥାତ୍ ଏହା ସଂସ୍କୃତ ଗଦ ପଦ୍ୟମୟ ରଚନା ବୋଲି ପ୍ରତୀୟମାନ ହେଉଛି । ଚମ୍ପୂ କାବ୍ୟର ମଙ୍ଗଳାଚରଣ ଏବଂ ପରିସମାପ୍ତିରୁ ମଧ୍ୟ ଏକଥା ସ୍ପଷ୍ଟ ହୋଇଥାଏ । ଅଧ୍ୟାପକ ଶ୍ରୀ ଗୌରୀକୁମାର ବ୍ରହ୍ମା, ଡକ୍ଟର ଜାନକୀବଲ୍ଲଭ ମହାନ୍ତି ପ୍ରମୁଖ ଏହି ମତ ପୋଷଣ କରନ୍ତି । "ସଂସ୍କୃତ ଚମ୍ପୂ ସହ ଓଡ଼ିଆ ଗୀତକୁ ଏପରି ସଂଯୋଜିତ କରିବା ରୀତି ବୋଧହୁଏ କବିସୂର୍ଯ୍ୟ ବଳଦେବଙ୍କ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ରଚିତ ହେବା ପରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରଚଳିତ ହୋଇଛି । ସଂସ୍କୃତରେ ଲିଖିତ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ସହ ଚଉତିରିଶ ଗୋଟି ବ୍ୟଞ୍ଜନ ବର୍ଣ୍ଣର କ୍ରମ ରକ୍ଷା କରି ଓ ପ୍ରତ୍ୟେକ ଗୀତର ପ୍ରତି ଚରଣର ଆଦ୍ୟରେ ଏକ ବର୍ଣ୍ଣାଦ୍ୟ ଶବ୍ଦାବଳୀ ବ୍ୟବହାର କରି ଉକ୍ତି ପ୍ରତ୍ୟୁକ୍ତି-ମୂଳକ ଯେଉଁ ଚଉତିରିଶ ଗୋଟି ଗୀତ ସଂଯୋଜିତ ହୋଇଥିଲା, ତାହା ଓଡ଼ିଶାରେ ବିଶେଷ ଜନପ୍ରିୟତା

ଅର୍ଜ୍ଜନ କରିଥିଲ । ଓଡ଼ିଆ ପାଠକମଣ୍ଡଳୀ କବିସୂର୍ଯ୍ୟଙ୍କ ସଂସ୍କୃତ ଚମ୍ପୂ ପ୍ରତି ଆଗ୍ରହୀ ନ ହୋଇ ଏହି ଚଉତିରିଶ ଗୋଟି ବର୍ଣ୍ଣମାଳାଶ୍ରିତ ଚଉପଦୀକୁ ଚମ୍ପୂ ଭାବରେ ଗ୍ରହଣ କରିଥିଲେ ।" *

## କଥାବସ୍ତୁ : କୃଷ୍ଣ-ସାହିତ୍ୟର ପରମ୍ପରା

'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' କୃଷ୍ଣ ସାହିତ୍ୟର ଅନ୍ତର୍ଗତ । ଆମ ରାଜ୍ୟରେ କୃଷ୍ଣ-ସାହିତ୍ୟର ଏକ ଦୀର୍ଘ ଓ ଗୌରବୋଜ୍ଜ୍ୱଳ ପରମ୍ପରା ରହିଛି । ଭାଗବତ, ପଦ୍ମପୁରାଣ, ମହାଭାରତ ପ୍ରଭୃତିରେ ବର୍ଣ୍ଣିତ କୃଷ୍ଣ-ଚରିତର ବିଭିନ୍ନ ଲୀଳା—ଗୋପଲୀଳା, ମଥୁରାଲୀଳା ଦ୍ୱାରକା ଲୀଳା ଇତ୍ୟାଦିରୁ ବିଭିନ୍ନ ଘଟଣା ବା ଉପାଖ୍ୟାନ ଗ୍ରହଣ କରି ବହୁ ସଂଖ୍ୟକ କାବ୍ୟ-କବିତା-ନାଟକାଦି ରଚିତ ହୋଇଛି । ଶ୍ରୀଚୈତନ୍ୟଙ୍କର ବହୁ ପୂର୍ବରୁ ଓଡ଼ିଶାରେ କୃଷ୍ଣ-ଉପାସନା ପ୍ରବର୍ତ୍ତିତ ହୋଇ ଥିବାରୁ ଖ୍ରୀଷ୍ଟୀୟ ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦୀଠାରୁ ଓଡ଼ିଆରେ ବିଧିବଦ୍ଧ ଭାବରେ କୃଷ୍ଣ-ସାହିତ୍ୟ ସୃଷ୍ଟି ହୋଇଥିବାର ଦେଖାଯାଏ । ଅବଶ୍ୟ ତା ପୂର୍ବରୁ ଏ ଅଞ୍ଚଳରେ ସଂସ୍କୃତ ଭାଷାରେ କୃଷ୍ଣ ସାହିତ୍ୟ ରଚିତ ହୋଇଥିବାର ପ୍ରମାଣ ମିଳୁଛି । ଦ୍ୱାଦଶ ଶତାବ୍ଦୀର କବି ଜୟଦେବଙ୍କ 'ଶ୍ରୀଗୀତଗୋବିନ୍ଦ' ଏହାର ପ୍ରକୃଷ୍ଟ ଉଦାହରଣ । କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଭାରତବର୍ଷରେ ଶ୍ରୀକୃଷ୍ଣ-ଲୀଳାର କାବ୍ୟୋପଯୋଗିତା'ର ବିପୁଳ ସମ୍ଭାବନା ସୃଷ୍ଟି କରିବାରେ ଗୀତଗୋବିନ୍ଦ ଏକ ପ୍ରଧାନ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ । ପରବର୍ତ୍ତୀ କାଳରେ ସଂସ୍କୃତ ତଥା ଓଡ଼ିଆରେ କୃଷ୍ଣ ସାହିତ୍ୟ ରଚନା ପାଇଁ ଏହା ବିଭିନ୍ନ କବିଙ୍କୁ ପ୍ରରୋଚିତ ଓ ଅନୁପ୍ରାଣିତ କରିଛି । ସଂସ୍କୃତରେ ରଚିତ ପଞ୍ଚାଙ୍କ ନାଟକ 'ଶ୍ରୀଜଗନ୍ନାଥବଲ୍ଲଭ'ର କବି ରାୟ ରାମାନନ୍ଦ ( ଷୋଡ଼ଶ ଶତାବ୍ଦୀ ) ଏବଂ ଆମର ଆଲୋଚ୍ୟ କବିସୂର୍ଯ୍ୟ ବଳଦେବ ରଥ ଏମାନଙ୍କ ମଧ୍ୟରେ ଦୁଇଟି ଉଜ୍ଜ୍ୱଳ ଉଦାହରଣ ।

ଶାରଳା ମହାଭାରତରେ ଶ୍ରୀକୃଷ୍ଣ ଓ ରାଧାଙ୍କ ଚରିତ୍ର ସ୍ଥାନ ଲାଭ କରିଥିଲେ ହେଁ, କୃଷ୍ଣଲୀଳାର ସ୍ୱାଦ୍ୟ ରସ ଶାରଳା ଦାସ ପ୍ରଦାନ କରି ନାହାନ୍ତି । କବି ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ

* ଓଡ଼ିଆ ଗୀତିକାବ୍ୟ—ଡକ୍ଟର ଜାନକୀବଲ୍ଲଭ ମହାନ୍ତି, ଗ୍ରନ୍ଥମନ୍ଦିର, କଟକ (୧୯୬୭)—ପୃଷ୍ଠା ୨୧୪

ପ୍ରମୁଖଙ୍କ ରଚନାରେ କୃଷ୍ଣ-ଚରିତର ମୂଖ୍ୟତଃ ଦେବାଶ୍ରିତ, ତାତ୍ତ୍ୱିକ ବିଭବ ପ୍ରକଟିତ ହୋଇଛି । ବିଶେଷତଃ ନିର୍ଗୁଣ, ନିରାକାର ବ୍ରହ୍ମ ରୂପେ ଶ୍ରୀକୃଷ୍ଣଙ୍କର ପରିକଳ୍ପନା ଏହି କବିମାନଙ୍କଦ୍ୱାରା କରାଯାଇଛି । ଶ୍ରୀଚୈତନ୍ୟଙ୍କଦ୍ୱାରା ବୈଷ୍ଣବ ଧର୍ମର ସୁପ୍ରସାର ପରେ ପରେ ଆମର କୃଷ୍ଣ-ସାହିତ୍ୟଧାରା ବିଚିତ୍ର ଓ ବହୁମୁଖୀ ହୋଇଥିବାର ଦେଖାଯାଏ । ଦନାଇ ଦାସଙ୍କର 'ଗୋପୀଭାଷା', ନରସିଂହ ସେଣ ମହାପାତ୍ରଙ୍କର 'ଗୋପକେଳି', ଗୋବିନ୍ଦ ଦାସଙ୍କର 'ଗୋପୀ ଚନ୍ଦନ', କାର୍ତ୍ତିକ ଦାସଙ୍କର 'ରୁକ୍ମଣୀ ବିଭା', ଦେବଦୁର୍ଲ୍ଲଭ ଦାସଙ୍କର 'ରହସ୍ୟ ମଞ୍ଜରୀ', ଘନକୃଷ୍ଣ ଦାସଙ୍କର 'ରସକଲ୍ଲୋଳ', ବୃନ୍ଦାବତୀ ଦାସୀଙ୍କର 'ପୂର୍ଣ୍ଣତମ ଚନ୍ଦ୍ରୋଦୟ', ଉପେନ୍ଦ୍ରଭଞ୍ଜଙ୍କର 'ଗୀତ ଭୂଷଣ ଓ 'କଳାକଉତୁକ', ଭୂପତି ପଣ୍ଡିତଙ୍କର 'ପ୍ରେମ ପଞ୍ଚାମୃତ', ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର 'ଯୁଗଳ ରସାମୃତ ଲହରୀ', ଅଭିମନ୍ୟୁ ସାମନ୍ତସିଂହାରଙ୍କର 'ବିଦଗ୍ଧ ଚିନ୍ତାମଣି', ଚକ୍ରବାକ ଚକ୍ରପାଣି ପଟ୍ଟନାୟକଙ୍କର 'କୃଷ୍ଣ ବିଳାସ', ଭକ୍ତଚରଣ ଦାସଙ୍କର 'ମଥୁରା ମଙ୍ଗଳ', ବ୍ରଜନାଥ ବଡ଼ଜେନାଙ୍କର 'ଶ୍ୟାମରାସୋତ୍ସବ', ଯଦୁମଣି ମହାପାତ୍ରଙ୍କର 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ପ୍ରଭୃତି ସେହି ସାହିତ୍ୟଧାରାର କେତେକ ଉଲ୍ଲେଖଯୋଗ୍ୟ କୃତି । ଏହା ବ୍ୟତୀତ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ରଚିତ ବା କୃଷ୍ଣ ବିଷୟକ ବହୁ ଭକ୍ତି ଗୀତିକା, କୋଇଲି, ଚଉତିଶା, ପୋଇ, ଲୀଳା, ସୁଆଙ୍ଗ ଇତ୍ୟାଦି ରହିଛି, ଯାହାର ଏକ ଦୀର୍ଘ ତାଲିକା ପ୍ରସ୍ତୁତ କରାଯାଇପାରେ । * ଆମ ରାଜ୍ୟରେ କୃଷ୍ଣ-ସାହିତ୍ୟର ପରମ୍ପରା ଏବେ ବି ବ୍ୟାହତ ହୋଇ ନାହିଁ ।

ଏହି ବିପୁଳ କୃଷ୍ଣ-ସାହିତ୍ୟରେ ଶ୍ରୀକୃଷ୍ଣଙ୍କର ମୁଖ୍ୟତଃ ଦୁଇଟି ରୂପ ପ୍ରକଟିତ ହୋଇଥିବାର ପରିଲକ୍ଷିତ ହୁଏ । ଗୋଟିଏ ହେଲା—ତାଙ୍କର ଐଶ୍ୱର୍ଯ୍ୟ-ମୟ ରୂପ । ଏହି ରୂପରେ ଶ୍ରୀକୃଷ୍ଣ ଚକ୍ରଧର ଏବଂ ଦୁଷ୍ଟ-ଦଳନକାରୀ । ପୁତନା, ଅଘାସୁର, ବକାସୁର, କଂସ, ଜରାସନ୍ଧ, ଶିଶୁପାଳ ପ୍ରଭୃତିଙ୍କୁ ଦଳନ କରି ସେ ଆପଣା ଶୌର୍ଯ୍ୟବୀର୍ଯ୍ୟର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଅନ୍ୟଟି ହେଲା—ତାଙ୍କର ମାଧୂର୍ଯ୍ୟମୟ ରୂପ । ଏହି ରୂପରେ ସେ ମୁରଲୀଧର ଏବଂ ଗୋପୀ-ମୋହନ ବା ରାଧାବଲ୍ଲଭ । ବିଭିନ୍ନ ଭଙ୍ଗୀରେ ବଂଶୀ ବାଦନ କରି ସେ

* ପ୍ରାଚୀନ ଓଡ଼ିଆ ଲିପି, ଭାଷା ଓ ସାହିତ୍ୟ—ପଣ୍ଡିତ ନୀଳମଣି ମିଶ୍ର, ଗ୍ରନ୍ଥମନ୍ଦିର, କଟକ (୧୯୭୬)—ପୃଷ୍ଠା ୧୬୮—୭୩ ଦ୍ରଷ୍ଟବ୍ୟ ।

ରାଧା ତଥା ଗୋପୀମାନଙ୍କର ଚିତ୍ତ-ହରଣ କରନ୍ତି—ଜୀବମାନଙ୍କୁ ନିଜ ଆଡ଼କୁ ଆକୃଷ୍ଟ କରି ନିଅନ୍ତି । ସର୍ବଭୂତକୁ ମଧୁର ଭାବେ ଆକର୍ଷଣ କରି ପାରିବାର ଶକ୍ତି ଧାରଣ କରିଥିବା ହେତୁ ସେ ଶ୍ରୀକୃଷ୍ଣ । ଆମର କବିମାନେ—ବିଶେଷତଃ ବୈଷ୍ଣବ ଧର୍ମାନୁଗ ସାହିତ୍ୟ ସ୍ରଷ୍ଟାଗଣ ଶ୍ରୀକୃଷ୍ଣଙ୍କର ଏହି ଦ୍ୱିବିଧ ରୂପ କାବ୍ୟ-କବିତାରେ ଚିତ୍ରଣ କରିଥିଲେ ହେଁ, ମାଧୁର୍ଯ୍ୟମୟ ରୂପ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି—ତଦନୁଯାୟୀ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ-ଲୀଳା ବର୍ଣ୍ଣନାରେ ଶତଜିହ୍ୱ ହୋଇ ଉଠିଛନ୍ତି । ତାହାର କାରଣ—ବୈଷ୍ଣବମାନଙ୍କ ଦୃଷ୍ଟିରେ ଦୁଷ୍ଟଦଳନ ବା ଭୂ-ଭାର ହରଣ କୃଷ୍ଣ-ଅବତାରର ଏକ ଗୌଣ ଉଦ୍ଦେଶ୍ୟ । ଶ୍ରୀକୃଷ୍ଣଙ୍କ ଆବିର୍ଭାବର ଅସଲ ତାତ୍ପର୍ଯ୍ୟ ହେଲା—ପ୍ରେମରସ ଆସ୍ୱାଦନ ଓ ରାଗାନୁଗା ଭକ୍ତି ପ୍ରଚାର । ଷୋଡ଼ଶ ଶତାବ୍ଦୀରେ କୃଷ୍ଣଦାସ କବିରାଜଙ୍କ 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥର ଆଦି ଲୀଳାରେ ସ୍ପଷ୍ଟ ଭାବରେ ବୋଲି ଯାଇଛି—

ଆନୁଷଙ୍ଗ କର୍ମ ଏଇ ଅସୁର ମାରଣ
ଯେ ଲାଗି ଅବତାର କହି ସେ ମୂଳ କାରଣ—
ପ୍ରେମରସ-ନିର୍ଯ୍ୟାସ କରିତେ ଆସ୍ୱାଦନ
ରାଗମାର୍ଗ ଭକ୍ତି ଲୋକେ କରିତେ ପ୍ରଚାରଣ ॥

ସେଥିପାଇଁ ଆମର କୃଷ୍ଣ ସାହିତ୍ୟର କବିଗଣ ଶ୍ରୀକୃଷ୍ଣଙ୍କ ଐଶ୍ୱର୍ଯ୍ୟ-ଲୀଳା ଅପେକ୍ଷା ମାଧୁର୍ଯ୍ୟ ଲୀଳା ବର୍ଣ୍ଣନାରେ ବିଶେଷ ଧ୍ୟାନ ଦେଇଛନ୍ତି । ପୂର୍ବ ପ୍ରଦତ୍ତ ତାଲିକାର କୃଷ୍ଣକାବ୍ୟ ସମୂହ ପ୍ରତି ଦୃଷ୍ଟି ଦେଲେ, ଏ କଥାର ସତ୍ୟତା ସହଜରେ ଉପଲବ୍ଧି କରି ହେବ । 'ଗୋପୀଭାଷା', 'ରହସ୍ୟ ମଞ୍ଜରୀ' 'ରସକଲ୍ଲୋଳ' ପ୍ରଭୃତି ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ଲୀଳା ହିଁ ପ୍ରାଧାନ୍ୟ ଲାଭ କରିଛି । କବିସୂର୍ଯ୍ୟ ବଳଦେବ ସେହି ପରମ୍ପରାର ବିଶ୍ୱସ୍ତ ଅନୁସରଣ କରିଥିବାର ମନେ ହୁଏ ।

ମୁଖ୍ୟତଃ ଗୋପପୁରରେ ଥିବା ସମୟରେ ପୌଗଣ୍ଡ ଓ କୈଶୋର ଅବସ୍ଥାରେ ଶ୍ରୀକୃଷ୍ଣଙ୍କର ଏହି ମାଧୁର୍ଯ୍ୟମୟ ରୂପ ପ୍ରକଟିତ ହୋଇଥିଲା । ରାଧା ଓ ଗୋପୀମାନଙ୍କର ଚିତ୍ତ-ହରଣ ପାଇଁ ତାଙ୍କର ଏହି ପ୍ରେମିକ ମୁରଲୀଧର ରୂପ—ସଂସାରରେ ରାଗମାର୍ଗ ଭକ୍ତିପ୍ରଚାର ପାଇଁ ତାଙ୍କର ରାସକ୍ରୀଡ଼ା । କବିସୂର୍ଯ୍ୟ ଶ୍ରୀକୃଷ୍ଣଙ୍କର ସେହି ମାଧୁର୍ଯ୍ୟ ଲୀଳାର ବିଷୟକୁ ଆପଣା ଚମ୍ପୂ କାବ୍ୟରେ

ଗ୍ରହଣ କରିଛନ୍ତି । ସଖୀ ଲଳିତାର ସହାୟତାରେ ରାଧାକୃଷ୍ଣଙ୍କର ମିଳନ ଏବଂ ରାଧାକୃଷ୍ଣ-ସଖୀ-ମଧୁମଙ୍ଗଳଙ୍କ ମଧ୍ୟରେ ମିଳନୋତ୍ତର ହାସ ପରିହାସ ହିଁ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ'ର କଥାବସ୍ତୁ । ଏହି କଥାବସ୍ତୁରେ କବିସୂର୍ଯ୍ୟ ରାଧାକୃଷ୍ଣଙ୍କ ଲୀଳାକୁ କେବଳ ଦେବାୟିତ କରି ନାହାନ୍ତି । ତାଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ପରମ-ବ୍ରହ୍ମ ପୁରୁଷ ଏବଂ ରାଧା ପ୍ରକୃତି, ଏମାନଙ୍କର ମିଳନ ହେଉଛି ଶ୍ୟାମ-ଗୌର ଦୁଇ ମହାତେଜର ମିଳନ । ତଥାପି ରାଧାକୃଷ୍ଣ ଲୀଳାକୁ ସେ ଯଥାସମ୍ଭବ ମାନବୀୟ, ଲୌକିକ ଓ ସ୍ୱାଭାବିକ କରିଛନ୍ତି । ଲଳିତା ଓ ମଧୁମଙ୍ଗଳଙ୍କର ସାନ୍ନିଧ୍ୟ ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମଲୀଳାକୁ ପ୍ରାକୃତ କରିବାରେ ସାହାଯ୍ୟ କରିଛି । ରାଧା ଲଳିତାଙ୍କ ମଧ୍ୟରେ ଚାତୁର୍ଯ୍ୟପୂର୍ଣ୍ଣ ଉକ୍ତି-ପ୍ରତ୍ୟୁକ୍ତି ଏବଂ ଶ୍ରୀକୃଷ୍ଣ-ମଧୁମଙ୍ଗଳଙ୍କ ମଧ୍ୟରେ ହାସ-ପରିହାସ ସେହି ଏକା ଲକ୍ଷ୍ୟରେ ସଂଯୋଜିତ ହୋଇଛି ।

ଚମ୍ପୂର କଥାବସ୍ତୁ ଘର୍ଘ ବା ଜଟିଳ ନୁହେଁ; କବିସୂର୍ଯ୍ୟ ଏଥିରେ ଘଟଣାର ବିସ୍ତୃତ ଜାଲ ବୁଣିବାକୁ ଯାଇ ନାହାନ୍ତି । ଉପକାହାଣୀ ମଧ୍ୟ ଏଥିରେ ସ୍ଥାନ ଲାଭ କରି ନାହିଁ । ବୋଲିବା ବାହୁଲ୍ୟ ଯେ—ଏହି ରୀତି ଏକାନ୍ତ ଭାବେ ଖଣ୍ଡକାବ୍ୟ-ସୁଲଭ । କଥାବସ୍ତୁ ସରଳ ହେଲେ ମଧ୍ୟ ଏଥିରେ ଚମତ୍କାରିତା ଓ ଗତିର ଅଭାବ ନାହିଁ । ଏପରି କୌଶଳର ସହିତ କବିସୂର୍ଯ୍ୟ କଥାବସ୍ତୁର ବିନ୍ୟାସ କରିଛନ୍ତି ଯେ, ଗତି ଓ ଚମତ୍କାରିତା ଧାରଣ କରି ତାହା ପ୍ରୀତିପ୍ରଦ ହୋଇ ଉଠିଛି—ଶ୍ରୋତା ବା ପାଠକ ପୂର୍ବରୁ ଖ୍ୟାତ ଏହି କ୍ଷୁଦ୍ର ଓ ସରଳ ବିଷୟଟି ପ୍ରତି ବିରକ୍ତି ପ୍ରକାଶ ନ କରି, ଗଭୀର ଉତ୍କଣ୍ଠା ଓ କୌତୂହଳ ସହକାରେ ଏଥିରେ ମନୋନିବେଶ କରି ପାରୁଛନ୍ତି ।

ଆମର ମଧ୍ୟଯୁଗୀୟ କାବ୍ୟ ବା ଖଣ୍ଡକାବ୍ୟ ସଦୃଶ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ଆରମ୍ଭରେ କବିସୂର୍ଯ୍ୟ ରାଧାକୃଷ୍ଣଙ୍କୁ ନମସ୍କାର ଜଣାଇ ମଙ୍ଗଳାଚରଣ କରିଛନ୍ତି । ସଂସ୍କୃତ ଭାଷାରେ ଲିଖିତ ଏହି ମଙ୍ଗଳାଚରଣରେ ସେ ଶ୍ରୀକୃଷ୍ଣଙ୍କୁ ମଙ୍ଗଳ ବିସ୍ତାର ପାଇଁ ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ତାଙ୍କର ଲୋକୋତ୍ତର ଲୀଳା ବର୍ଣ୍ଣନାରେ ନିଜର ବୁଦ୍ଧିହୀନତା ବିଷୟ ପ୍ରକାଶ କରିଛନ୍ତି । ଏହା ନିଶ୍ଚିତ ରୂପେ ବଳଦେବଙ୍କର କବିସୁଲଭ ନମ୍ରତା ଓ ବିନୟ ଭାବ । ମଙ୍ଗଳାଚରଣ ପରେ ରାଧା, ଲଳିତା, ଶ୍ରୀକୃଷ୍ଣ ପ୍ରମୁଖଙ୍କର ସଙ୍ଗୀତମୟୀ ସଂଳାପ ବା ଉକ୍ତି-ପ୍ରତ୍ୟୁକ୍ତି ମଧ୍ୟରେ କାବ୍ୟର କଥାବସ୍ତୁ ଅଗ୍ରଗତି କରି ଯାଇଛି । କେବଳ

*

ଚମ୍ପୂର ଦୁଇଟି ଗୀତ କବିସୂର୍ଯ୍ୟଙ୍କର ନିଜସ୍ୱ କଥା; ମ-ଗୀତରେ (ମଧୂରେ ମନ୍ଦ ମନ୍ଦ ହୋଇ ଗନ୍ଧବହ ପ୍ରସରିଲ ···) କବି ରାଧାକୃଷ୍ଣଙ୍କର ମିଳନ ବର୍ଣ୍ଣନା ଏବଂ କ୍ଷ-ଗୀତରେ (କ୍ଷମାନୁକମ୍ପାଧର ହେ) କାବ୍ୟ ସମାପ୍ତି-ସୂଚକ ଇଷ୍ଟ-ଦେବତା ପ୍ରାର୍ଥନା କରିଛନ୍ତି । ଚଉତିଶା ରୀତିରେ ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକର କ୍ରମାନୁଯାୟୀ ବ୍ୟବହାରରେ ଗୀତସମୂହ ରଚିତ ହୋଇଥିଲେ ହେଁ, ଶ-ଷ-ସ ବର୍ଣ୍ଣ ପ୍ରୟୋଗରେ କବିସୂର୍ଯ୍ୟ କ୍ରମଭଙ୍ଗ କରିଛନ୍ତି । ଶ-ସ ଷ—ଏହି କ୍ରମରେ ସେ ଚଉପଦୀ ତିନିଗୋଟି ସନ୍ନିବେଶିତ କରିଛନ୍ତି । ଏପରି ବ୍ୟତିକ୍ରମ ଦ୍ୱାରା ଘଟଣାର ସଙ୍ଗତି ଏବଂ କଥାବସ୍ତୁର ଗତି ଅକ୍ଷୁଣ୍ଣ ରହିଥିଲେ ମଧ କବି ଏହା କାହିଁକି କରିବାକୁ ଗଲେ, ବୁଝି ହୁଏ ନାହିଁ । ତାଙ୍କ ଭଳି ପ୍ରତିଭାଧର କବିଙ୍କ ପକ୍ଷରେ ଏପରି ବ୍ୟତିକ୍ରମ ନ କରି ଅର୍ଥାତ୍ ଶ ଷ-ସ ବର୍ଣ୍ଣ କ୍ରମରେ ଚଉପଦୀ ସନ୍ନିବେଶିତ କରି କଥାବସ୍ତୁର ଯଥାଯଥ ବିନ୍ୟାସ କଷ୍ଟକର ହୋଇ ନ ଥାନ୍ତା । ଏଠାରେ ପୁଣି ଏହା ଉଲ୍ଲେଖଯୋଗ୍ୟ ଯେ—ଚମ୍ପୂର ଷ-ଗୀତରେ ମାତ୍ର ଗୋଟିଏ ଥର ପାଦ ଆଦ୍ୟରେ ଷ ବର୍ଣ୍ଣଟି ବ୍ୟବହୃତ ହୋଇଛି; ସେହିପରି ସ-ଗୀତରେ ପାଦ ଆଦ୍ୟରେ ଏକାଧିକ ଥର ଶ ବର୍ଣ୍ଣଟି ପ୍ରୟୋଗ କରାଯାଇଛି । କବିସୂର୍ଯ୍ୟଙ୍କର 'ଚୌପଦୀ ରତ୍ନାକର', 'ଚୌପଦୀ ଚନ୍ଦ୍ରୋଦୟ' ଏବଂ ବିଭିନ୍ନ ଚଉତିଶାରେ ଶ-ଷ-ସ ବର୍ଣ୍ଣ ପ୍ରୟୋଗରେ ଊଣାଧିକେ ଅନୁରୂପ ବିପର୍ଯ୍ୟୟ ପରିଲକ୍ଷିତ ହୁଏ ।

ରାଧାକୃଷ୍ଣଙ୍କର ମିଳନ ବିଷୟ ନେଇ ପୂର୍ବରୁ ଆମର କେତେକ କାବ୍ୟ-କବିତା ରଚିତ ହୋଇଥିଲେ ହେଁ କବିସୂର୍ଯ୍ୟ ଚମ୍ପୂର କଥାବସ୍ତୁ ବିନ୍ୟାସରେ ସେଗୁଡ଼ିକଦ୍ୱାରା ବିଶେଷ ପ୍ରଭାବିତ ହୋଇଥିବାର ମନେ ହୁଏ ନାହିଁ । ବରଂ ଏ ସମ୍ପର୍କରେ ଦୁଇଟି ସଂସ୍କୃତ ଗ୍ରନ୍ଥର ନାମ ସ୍ମରଣ-ପଥକୁ ଆସେ । କବି ଜୟଦେବଙ୍କ 'ଗୀତଗୋବିନ୍ଦ' ଏବଂ ରାୟ ରାମାନନ୍ଦଙ୍କ 'ଜଗନ୍ନାଥବଲ୍ଲଭ ନାଟକ'ର ପ୍ରତ୍ୟକ୍ଷ ପ୍ରଭାବ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ'ର କଥାବସ୍ତୁରେ ପ୍ରତିଫଳିତ ହୋଇଥିବାର ଜଣାପଡ଼େ । ଅଳ୍ପ କେତେକ ଘଟଣା ଏବଂ ଗୋଟିଏ ଦୁଇଟି ଚରିତ୍ରର ଅଦଳବଦଳ ମାତ୍ର ବ୍ୟତିକ୍ରମ, ନୋହିଲେ ତିନିଟିଯାକ ସାହିତ୍ୟ-କୃତିରେ କଥାବସ୍ତୁର ଛାଞ୍ଚ ଏକ ପ୍ରକାର । ଉଦାହରଣ ସ୍ୱରୂପ—'ଗୀତଗୋବିନ୍ଦ'ରେ ରାଧା ଚରିତ୍ରର ବୈଚିତ୍ର୍ୟ କବିସୂର୍ଯ୍ୟଙ୍କ ଚମ୍ପୂର ରାଧା ଚରିତ୍ରରେ ଅନୁସୃତ ହୋଇ ନାହିଁ; 'ଜଗନ୍ନାଥବଲ୍ଲଭ ନାଟକ'ରେ

ରାଧାକୃଷ୍ଣଙ୍କ ମିଳନ ପ୍ରାରମ୍ଭରେ କୁଞ୍ଜବନରେ ଷଣ୍ଢାସୁରର ଆତଙ୍କ ସୃଷ୍ଟି ଘଟଣା କବିସୂର୍ଯ୍ୟଙ୍କ ଚମ୍ପୂରେ ପରିତ୍ୟକ୍ତ ହୋଇଛି ।

## ନାମକରଣ

କେହି କେହି କବିସୂର୍ଯ୍ୟ ବଳଦେବଙ୍କର ଏହି ବିଖ୍ୟାତ ଚମ୍ପୂ କାବ୍ୟକୁ 'କିଶୋରଚନ୍ଦ୍ରାନନ' ନାମରେ ଅଭିହିତ କରୁଥିବାର ଦେଖାଯାଏ । ମାତ୍ର ଏପରି ନାମକରଣ ଯୁକ୍ତିଯୁକ୍ତ ମନେ ହୁଏ ନାହିଁ । 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ନାମଟି ହିଁ ଯୁକ୍ତିଯୁକ୍ତ । 'କିଶୋରଚନ୍ଦ୍ର' ଶବ୍ଦଟି ଶ୍ରୀକୃଷ୍ଣଙ୍କର ନାମାନ୍ତର; ଏହା ମଧ୍ୟ ତାଙ୍କର ବିଶେଷଣ ରୂପେ ବ୍ୟବହୃତ ହୋଇଥାଏ । ଶ୍ରୀକୃଷ୍ଣଙ୍କ ଆନନ୍ଦକୁ ବିଷୟବସ୍ତୁ ରୂପେ ଗ୍ରହଣ କରି ରଚିତ ହୋଇଛି ବୋଲି, କିମ୍ବା କାବ୍ୟଟି ଶ୍ରୀକୃଷ୍ଣଙ୍କର ଆନନ୍ଦଦାନକାରୀ ବୋଲି ଏହାର ନାମ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' । କିଶୋରଚନ୍ଦ୍ରଙ୍କ ଆନନ ବା ମୁଖମଣ୍ଡଳର ଚମ୍ପୂ—ଏହା ଅର୍ଥହୀନ ମନେ ହେଉଛି ।

କିଶୋର ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ଲୀଳା ଚମ୍ପୂ କାବ୍ୟର ଉପଜୀବ୍ୟ । ନିଜେ ଶ୍ରୀକୃଷ୍ଣ ନିଜର ଲୀଳା ଶ୍ରବଣ ବା ଦର୍ଶନରେ ଆନନ୍ଦ ଲାଭ କରିବା ସ୍ୱାଭାବିକ । ବୈଷ୍ଣବ ମତାନୁଯାୟୀ—ରାଧାକୃଷ୍ଣଙ୍କର ମାଧୁର୍ଯ୍ୟ ଲୀଳା-ବିଷୟକ ନୃତ୍ୟ-ସଙ୍ଗୀତ ଏକ ପ୍ରକାର ଧର୍ମୀୟ ଅନୁଷ୍ଠାନ । ଏହାଦ୍ୱାରା ସେହି 'ଅପ୍ରାକୃତ ପ୍ରେମ-ମୂର୍ତ୍ତି'ଙ୍କର ସ୍ୱରୂପ-ସେବା ତୁଲ୍ୟ ବିଗ୍ରହ-ସେବା ସମାହିତ ହୋଇଥାଏ । କିଶୋରଚନ୍ଦ୍ରଙ୍କ ମାଧୁର୍ଯ୍ୟଲୀଳା ତ ସ୍ୱୟଂ ଆନନ୍ଦମୟ ! ପୁଣି ବିଗ୍ରହମାନଙ୍କ ପକ୍ଷରେ ଆପଣା ଲୀଳା ଶ୍ରବଣ ବା ଦର୍ଶନ ଅତୀବ ପ୍ରୀତିପ୍ରଦ । ତେଣୁ ଉକ୍ତ ଚମ୍ପୂ କାବ୍ୟରେ କିଶୋରଚନ୍ଦ୍ର ଶ୍ରୀକୃଷ୍ଣଙ୍କର ଆନନ୍ଦ ବିଷୟ ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ଏହା ତାଙ୍କ ପକ୍ଷରେ ଆନନ୍ଦଦାୟୀ ହୋଇପାରିଛି । କବିସୂର୍ଯ୍ୟ ବଳଦେବ ଖୁବ୍ ସମ୍ଭବ ଏହି ଲକ୍ଷ୍ୟରେ ସ୍ୱରଚନାଟିର ନାମ ଦେଇଛନ୍ତି— 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ।

## ଚରିତ୍ର ଚିତ୍ରଣ

'କିଶୋରଚନ୍ଦ୍ରାନନ୍ଦ ଚଂପୂ'ର ଚରିତ୍ର ଚିତ୍ରଣ ବିଷୟ ଆଲୋଚନା କଲାବେଳେ ସଂସ୍କୃତ ସାହିତ୍ୟ ଏବଂ ତଦନୁସାରୀ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର

ଚରିତ୍ର ଚିତ୍ରଣ ସମ୍ପର୍କରେ କେତେକ ସାଧାରଣ ତଥ୍ୟ ଆମକୁ ସ୍ମରଣ ରଖିବାକୁ ହେବ । ପ୍ରଥମତଃ ସଂସ୍କୃତ ତଥା ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଚରିତ୍ର ଚିତ୍ରଣ ଉପରେ ଗୁରୁତ୍ୱ ଆରୋପିତ ହୋଇ ନାହିଁ । ଚରିତ୍ର ଚିତ୍ରଣ ଅପେକ୍ଷା ରସର ଉଦ୍‌ବୋଧନ କରିବା ସେତେବେଳେ ଥିଲା ସେହି ସେହି ସାହିତ୍ୟର ପ୍ରଧାନ ଆଭିମୁଖ୍ୟ । ଦ୍ୱିତୀୟତଃ ତତ୍‌କାଳୀନ ସାହିତ୍ୟରେ ଯେଉଁକ ଚରିତ୍ର ଚିତ୍ରଣ କରାଯାଇଛି, ତହିଁରେ ବୈଚିତ୍ର୍ୟ ଓ ବହୁମୁଖୀନତା ବିଶେଷ ନାହିଁ । ନାରୀ ଓ ପୁରୁଷ ଚରିତ୍ରଗୁଡ଼ିକ କେତେକ ନିର୍ଦ୍ଦିଷ୍ଟ ଗ୍ରୁଣ୍ଟରେ ଗଢ଼ା ହୋଇଥିଲା ଭଳି ଲାଗେ । ଧୀରୋଦାତ୍ତ, ଧୀର-ଲଳିତ, ଧୀର-ପ୍ରଶାନ୍ତ, ଧୀରୋଦ୍ଧତ—ଏହି ଚାରି ପ୍ରକାର ନାୟକ ଚରିତ୍ର । ଶୃଙ୍ଗାରିକ ଦୃଷ୍ଟିକୋଣରୁ ଏଗୁଡ଼ିକ ମଧ୍ୟରୁ ପ୍ରତ୍ୟେକ ପୁଣି ଦକ୍ଷିଣ, ଧୃଷ୍ଟ, ଅନୁକୂଳ ଓ ଶଠ—ଏହିପରି ମୁଖ୍ୟ ଚାରି ଭାଗରେ ବିଭକ୍ତ ହୋଇ ପାରନ୍ତି । ଏହା ବ୍ୟତୀତ ବିଟ, ଚେଟ, ବିଦୂଷକ, ପୀଠମର୍ଦ୍ଦ, ଶକାର ଆଦି ପୁରୁଷ ଚରିତ୍ରର ମଧ୍ୟ ସମାବେଶ ହୋଇଥାଏ । ସେହିପରି ନାରୀ ଚରିତ୍ର ସ୍ୱୀୟା, ପରକୀୟା ଓ ସାଧାରଣୀ ଭେଦରେ ତିନି ପ୍ରକାର; ଅବସ୍ଥା-ଭେଦରେ ଏମାନଙ୍କ ମଧ୍ୟରୁ ପ୍ରତ୍ୟେକ ପୁଣି ସ୍ୱାଧୀନ-ଭର୍ତ୍ତୃକା, ଖଣ୍ଡିତା, ଅଭିସାରିକା, ବିପ୍ରଲବ୍‌ଧା, ବାସକସଜ୍ଜା ଇତ୍ୟାଦି ଆଠ ଆଠ ଭାଗରେ ବିଭକ୍ତ ହୋଇ ପାରନ୍ତି । ପ୍ରାଚୀନ କବିମାନେ ସାଧାରଣତଃ ଏହି ବିଭାଜନ-ସୀମା ମଧ୍ୟରେ ଥାଇ ଚରିତ୍ର ଚିତ୍ରଣ କରିଛନ୍ତି; ସୀମା ବାହାରକୁ ବିଶେଷ ଯାଇ ନାହାନ୍ତି । ତୃତୀୟତଃ ତତ୍‌କାଳୀନ ସାହିତ୍ୟରେ ଚରିତ୍ରଗୁଡ଼ିକର ମୁଖ୍ୟତଃ ବହିରଙ୍ଗ ଚିତ୍ର ପ୍ରଦାନ କରାଯାଇଛି; ସେଗୁଡ଼ିକର ଅନ୍ତରଙ୍ଗ ଆଲେଖ୍ୟ ବିଶେଷ ଅଙ୍କିତ ହୋଇ ନାହିଁ । ନାରୀ ବା ପୁରୁଷ ଚରିତ୍ରର ଉପରି ଦିଗ ପ୍ରତି ସାହିତ୍ୟସ୍ରଷ୍ଟାମାନେ ଯେତିକି ଦୃଷ୍ଟି ଦେଇଛନ୍ତି, ଭିତର ଦିଗ ପ୍ରତି ସେତିକି ଧ୍ୟାନ ଦେଇ ପାରି ନାହାନ୍ତି । ତେଣୁ ଚରିତ୍ରଗୁଡ଼ିକର ମନୋବୃତ୍ତି ବା ମାନସିକ ଦ୍ୱନ୍ଦ୍ୱ, ଅନ୍ତରର କ୍ରିୟା-ପ୍ରତିକ୍ରିୟା ଏବଂ ହୃଦୟ-ମନ୍ଥନର ରୂପାୟନ ସେତେବେଳର ସାହିତ୍ୟରେ ଖୁବ୍ କମ୍ ହୋଇଥିବାର ଦେଖାଯାଏ ।

ଚଂପୂର ଚରିତ୍ର ଚିତ୍ରଣରେ କବିସୂର୍ଯ୍ୟ ବଳଦେବ ମୋଟାମୋଟି ଏହି ମଧ୍ୟଯୁଗୀୟ ରୀତି ଅନୁସରଣ କରିଥିଲେହେଁ, ଏଥିରେ ସୁପ୍ରକଟ କେତେକ ବିଶେଷତ୍ୱ ଦୃଷ୍ଟି ଏଡ଼ାଇ ପାରେ ନାହିଁ । ଶ୍ରୀକୃଷ୍ଣ, ରାଧା, ଲଳିତାଦି ଚରିତ୍ର ସଂସ୍କୃତ ତଥା ଆମର ପ୍ରାଚୀନ ସାହିତ୍ୟରେ ବହୁଳ ଭାବରେ ଚିତ୍ରିତ

ହୋଇଛି । କବିସୂର୍ଯ୍ୟ ତାହାଦ୍ୱାରା ଅନୁପ୍ରାଣିତ ହୋଇଥିଲେ ମଧ୍ୟ ଚଂପୂର ଚରିତ୍ର ରୂପାୟନରେ ବହୁ ପରିମାଣରେ ଗତାନୁଗତିକତା ପରିହାର କରିଛନ୍ତି । ଏଠାରେ ଆମକୁ ସ୍ମରଣ ରଖିବାକୁ ହେବ ଯେ—ଚଂପୂର ଚରିତ୍ରଗୁଡ଼ିକ ପ୍ରଖ୍ୟାତ ଓ ପୌରାଣିକ; ଏମାନଙ୍କ ବିଷୟରେ ଆମର କେତେକ ନିର୍ଦ୍ଦିଷ୍ଟ ଧର୍ମୀୟ ଦୃଷ୍ଟିକୋଣ ଓ ଆଧ୍ୟାତ୍ମିକ ଭାବ ବଦ୍ଧମୂଳ ହୋଇ ରହିଛି । କବିସୂର୍ଯ୍ୟ ସେହି ପରିସର ମଧ୍ୟରେ ଥାଇ ଯଥାସମ୍ଭବ ଅଭିନବ ଓ ଜୀବନ୍ତ କରି ଚରିତ୍ର ରୂପାୟନରେ ସମର୍ଥ ହୋଇଛନ୍ତି—ଚରିତ୍ରଗୁଡିକୁ ଲୌକିକତା ଓ ମାନବୀୟତାର ପୁଟ ଦେଇ ଅନେକ ପରିମାଣରେ ପ୍ରାକୃତ ଓ ସ୍ୱାଭାବିକ କରି ପାରିଛନ୍ତି । ଖଣ୍ଡକାବ୍ୟ-ଉପଯୋଗୀ ଅଳ୍ପ କେତୋଟି ମାତ୍ର ଚରିତ୍ର ଚଂପୂ କାବ୍ୟରେ ସ୍ଥାନ ଲାଭ କରିଛି ।

ଲଳିତା—ରୂପାୟନ ଦିଗରୁ ଏବଂ କାବ୍ୟର କଥାବସ୍ତୁରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ଦୃଷ୍ଟିରୁ ଲଳିତା ହିଁ କିଶୋରଚନ୍ଦ୍ରାନନ୍ଦ ଚମ୍ପୂର ସର୍ବଶ୍ରେଷ୍ଠ ଚରିତ୍ର । ଚମ୍ପୂର ଭ-ଗୀତ ପର୍ଯ୍ୟନ୍ତ ସେ ଅତି ଗୁରୁତ୍ୱ ଓ ବିଚକ୍ଷଣତାର ସହିତ ଦୌତ୍ୟ-କର୍ମ କରି ରାଧାକୃଷ୍ଣଙ୍କର ମିଳନ ପୂର୍ବରୁ ଫୁଲ ତୋଳିବା ବାହାନାରେ ମେଳାଣି ନେଇ ଯାଇଛି । ତତ୍ପରେ ବ, ଷ ଏବଂ ହ ଗୀତରେ ସଖୀମଣ୍ଡଳୀ ମଧ୍ୟରେ ସେ ହୁଏତ ଥାଇପାରେ, କିନ୍ତୁ ସେଠାରେ ତାହାର କୌଣସି ଭୂମିକା ନାହିଁ । ଦୌତ୍ୟ କର୍ମରେ ତାହାର ବ୍ୟକ୍ତିତ୍ୱର ଗରିମା ସୂର୍ଯ୍ୟାଲୋକ ପରି ସୁସ୍ପଷ୍ଟ ହୋଇ ଉଠିଛି—ରାଧାକୃଷ୍ଣଙ୍କ ହୃଦୟରେ କୌଶଳରେ ସହ ଆଶା-ନିରାଶାର ଭୂମୂଳ ଆଲୋଡ଼ନ ସୃଷ୍ଟି କରି କାବ୍ୟର ଚମତ୍କାରିତା ବୃଦ୍ଧି କରିଛି । ରାଧାକୃଷ୍ଣ "ଲଳିତା-ହସ୍ତରେ କାଷ୍ଠ-ପୁତ୍ତଳିକା ପରି" ହୋଇ ଯାଇଛନ୍ତି । * "ଭାବପ୍ରବଣ ଓ ପରସ୍ପର ପ୍ରତି ନିରାଲମ୍ବ ଭାବରେ ଆସକ୍ତ ଦୁଇ ପ୍ରଣୟୀଜନଙ୍କୁ ମିଳାଇବା ଆଗରୁ ଏହି ଦୁଷ୍ଟ-ମଧୁର ଦୂତୀ ମଜା ଦେଖିବାପାଇଁ ସେମାନଙ୍କୁ ଏକ ପ୍ରକାର ନାକରେ ଦଉଡ଼ି ଲଗେଇ ଟଣାଟଣି

---

* ଓଡ଼ିଆ ବୈଷ୍ଣବ ସାହିତ୍ୟ—ଡକ୍ଟର ନଟବର ସାମନ୍ତରାୟ, ବାଣୀ ଭଣ୍ଡାର, କଟକ (୧୯୫୯)—ପୃଷ୍ଠା ୫୩

କରି ଗ୍ରୁଡ଼ିଛନ୍ତି ।’’ * ଏହି ଦୃଷ୍ଟିରୁ ଜୟଦେବଙ୍କ ‘ଗୀତଗୋବିନ୍ଦ’ର ସଖୀ ବା ସହଚରୀ ଚରିତ୍ର ଏବଂ ରାୟ ରାମାନନ୍ଦଙ୍କ ‘ଜଗନ୍ନାଥ ବଲ୍ଲଭ ନାଟକ’ର ମଦନିକା ଚରିତ୍ର ଲଳିତା ସହିତ ତୁଳିତ ହୋଇପାରେ । ତଥାପି ପ୍ରଥମୋକ୍ତ ଚରିତ୍ର ଯୋଡ଼ିକ ଅପେକ୍ଷା ଲଳିତା ଯେ ଅଧିକ ଜୀବନ୍ତ ଓ ପ୍ରଭାବଶାଳୀ ଏବଂ ସେଥିପାଇଁ ସାର୍ଥକ ଓ ସୁସମ୍ପନ୍ନ ଚରିତ୍ର, ଏଥିରେ ସନ୍ଦେହ ନାହିଁ ।

ବୈଷ୍ଣବମାନଙ୍କ ଦୃଷ୍ଟିରେ ଭକ୍ତିରସର ବିଜ୍ଞାନ-ଶାସ୍ତ୍ର ଶ୍ରୀରୂପ ଗୋସ୍ୱାମୀ-କୃତ ‘ଉଜ୍ଜ୍ୱଳ ନୀଳମଣି’ ଗ୍ରନ୍ଥରେ ରାଧାଙ୍କର ସଖୀମାନଙ୍କୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇଛି । ତନ୍ମଧ୍ୟରୁ ‘ପରମପ୍ରେଷ୍ଠ ସଖୀ’ ପର୍ଯ୍ୟାୟରେ ଲଳିତା, ବିଶାଖାଦି ଆଠ ଜଣଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି । ଗୋଲୋକରେ ରାଧାଙ୍କ ଲୋମକୂପରୁ ଏମାନେ ଜନ୍ମ ହୋଇଥିବାର ବ୍ରହ୍ମବୈବର୍ତ୍ତ ପୁରାଣରେ କଥିତ ହୋଇଛି । ରାଧାକୃଷ୍ଣଙ୍କ ପ୍ରଣୟ ବ୍ୟାପାରରେ ଦୌତ୍ୟ-କର୍ମ ଏମାନଙ୍କର କର୍ତ୍ତବ୍ୟ । ଏଇମାନେ ହିଁ କେବଳ ରାଧାକୃଷ୍ଣଙ୍କ ଗୂଢ଼ତର ପ୍ରେମଲୀଳାର ମହତ୍ତ୍ୱ ହୃଦୟଙ୍ଗମ କରି କାର୍ଯ୍ୟ କରନ୍ତି । ‘ପ୍ରେମକଳ୍ପଲତା’ ରାଧାଙ୍କର ଏମାନେ ହେଉଛନ୍ତି ‘ପଲ୍ଲବ-ପୁଷ୍ପ’, ପୁଣି ‘କାୟବ୍ୟୂହ’ । ‘ଲୀଳା-ବିସ୍ତାରିଣୀ’ ହୋଇ ରାଧାକୃଷ୍ଣଙ୍କ ରାସଲୀଳାକୁ ଏମାନେ ବୈଚିତ୍ର୍ୟମୟ ଓ ଐଶ୍ୱର୍ଯ୍ୟମଣ୍ଡିତ କରନ୍ତି । କୃଷ୍ଣଦାସ କବିରାଜଙ୍କ ‘ଚୈତନ୍ୟ ଚରିତାମୃତ’ ଗ୍ରନ୍ଥରେ କୁହାଯାଇଛି—

ମହାଭାବ-ଚିନ୍ତାମଣି ରାଧାର ସ୍ୱରୂପ
ଲଳିତାଦି ସଖୀ ତାଁର କାୟବ୍ୟୂହ-ରୂପ ।

× × ×

ରାଧାକୃଷ୍ଣେର ଲୀଳା ଏଇ ଅତି ଗୂଢ଼ତର
ଦାସ୍ୟ-ବାତ୍ସଲ୍ୟ ଭାବେର ନା ହୟ ଗୋଚର ।
ସବେ ଏକ ସଖୀଗଣେର ଇହା ଅଧିକାର
ସଖୀ ହୈତେ ହୟ ଏଇ ଲୀଳାର ବିସ୍ତାର ।
ସଖୀ ବିନୁ ଏଇ ଲୀଳାର ପୁଷ୍ଟି ନାହି ହୟ
ସଖୀ ଲୀଳା ବିସ୍ତାରିୟା ସଖୀ ଆସ୍ୱାଦୟ । —ମଧ୍ୟଲୀଳା ।

* ଓଡ଼ିଆ ସାହିତ୍ୟର ଇତିହାସ—ଡକ୍ଟର ମାୟାଧର ମାନସିଂହ, ଗ୍ରନ୍ଥ ମନ୍ଦିର, କଟକ (୧୯୬୭)—ପୃଷ୍ଠା ୧୦୬

ବୈଷ୍ଣବ ମତରେ—ଏହି ସଖୀମାନଙ୍କର ପୁଣି କୌଣସି କାମବାସନା ନାହିଁ । ଏମାନେ ଆତ୍ମସୁଖ ପରିହାର କରି କୃଷ୍ଣ-ସୁଖ ସକାଶେ କାର୍ଯ୍ୟ କରି ଥାଆନ୍ତି । ରାଧାକୃଷ୍ଣଙ୍କର ପ୍ରଣୟ-ଲୀଳା ଓ ମିଳନ ସଂଘଟନରେ ଏମାନଙ୍କର ପରମାନନ୍ଦ । କବିସୂର୍ଯ୍ୟ ଏହି ଆଭିମୁଖ୍ୟ ଘେନି ଚମ୍ପୂ କାବ୍ୟରେ ଲଳିତା ଚରିତ୍ରର ରୂପାୟନ କରିଛନ୍ତି । ତାଙ୍କର ଚତୁରା ଲଳିତା 'ବହିଃପ୍ରାଣ ପରି' ରାଧାଙ୍କୁ ପରିପାଳନ କରିଛି (ପଦ୍ମପୁରାଣ ମତରେ ରାଧା ଓ ଲଳିତାଙ୍କ ମଧ୍ୟରେ କୌଣସି ଭେଦଭାବ ନାହିଁ)—ଶ୍ରୀକୃଷ୍ଣଙ୍କର 'ନବୀଡ଼ ଅଳି' ରାଧାଙ୍କ ଗ୍ରାମୁରେ ଆସି ଚାତୁର୍ଯ୍ୟକ୍ ଭଙ୍ଗୀରେ ନିବେଦନ କରିଛି । ରାଧା ତଥା ଶ୍ରୀକୃଷ୍ଣ ଉଭୟଙ୍କ ମନର ଦୃଢ଼ତା ଏବଂ ହୃଦୟାନୁରାଗର ନିଷ୍ଠା ପରୀକ୍ଷା ପାଇଁ ତାହାର ଛଳନା ଓ ବକ୍ରୋକ୍ତି କାବ୍ୟ ମଧ୍ୟରେ ଅତ୍ୟନ୍ତ ଉପଭୋଗ୍ୟ ହୋଇଛି । ପ୍ରକୃତରେ ରାଧାକୃଷ୍ଣଙ୍କ ପ୍ରଣୟ-ଲୀଳା ବିସ୍ତାରରେ ଲଳିତାର ଶୁଭଦାନ ଯଥେଷ୍ଟ । ସେହି କାର୍ଯ୍ୟରେ 'ନିକୁଞ୍ଜସଞ୍ଚାର ଶ୍ରମରୁ ତାହାର ଚରଣତଳ ଫାଟି ପଡ଼ିଥିଲେ' ହେଁ—'ଫନ୍ଦିରିଖୋର', 'କୁଟୀଳହୃଦୟା' ଆଦି ଅପବାଦ ଲାଭ ହୋଇଥିଲେ ହେଁ, ସେ ଉଦ୍ଦେଶ୍ୟ ସାଧନ-ପଥରୁ ପଶ୍ଚାତ୍ପଦ ହୋଇ ନାହିଁ । କବି ରାଧାମୋହନ ଗଡ଼ନାୟକ ନିଜର ସୁପରିଚିତ 'ଲଳିତା' କବିତାରେ ସେଥିପାଇଁ ଯଥାର୍ଥତଃ ଗାଇଛନ୍ତି—

ଦିବା ରଜନୀର ମଧ୍ୟେ ସନ୍ଧ୍ୟା ଯେସନେ ଝଳିତା
ଏହି କ୍ଷଣି ବନ ଉରସେ
ଛୁଡ଼ା ହୋଇଥିଲି ତମସେ
ରାଧା-ମାଧବଙ୍କ ମଧ୍ୟେ ସୁନ୍ଦରି ଆଗୋ ଲଳିତା ।

× × × ×

ପଥ କଣ୍ଟକ ବାଜି ଗୋ ବିକ୍ଷତ ତବ ଚରଣ
ଜନ ଅପବାଦ ଶଙ୍କା
ଚିତ୍ତେ ରହିଛି ଅଙ୍କା
ପ୍ରେମିକା ନୁହଁ ତ ଦୂତିକା, କାହିଁ ଏତେ ବ୍ୟଥା-ବରଣ !

× × × ×

ଆପଣାରେ କରି ଷଣ୍ଡ
ଅପରେ କରୁଛ ପଣ୍ଡ
ପ୍ରେମିକା ନୁହଁ ତ ଦୂତିକା, ପ୍ରେମିକାର ତୁମେ ଗୁରୁ ଗୋ ।

ପ୍ରଣୟ ବ୍ୟାପାରରେ ସଖୀ ବା ଦୂତୀର ଯେଉଁ ଗୁଣ ବା ସାମର୍ଥ୍ୟ ରହିବା ଆବଶ୍ୟକ, ଲଳିତା ଚରିତ୍ରରେ ତାହା ସମସ୍ତ ପ୍ରକଟିତ ହୋଇଥିବାର ଦେଖାଯାଏ । ମହର୍ଷି ବାତ୍ସ୍ୟାୟନ ଆପଣା 'କାମସୂତ୍ର' ଗ୍ରନ୍ଥରେ ନିସୃଷ୍ଟାର୍ଥା, ପରିମିତାର୍ଥା, ପତ୍ରହାରୀ, ସ୍ୱୟଂଦୂତୀ, ମୂଢ଼ଦୂତୀ, ଭାର୍ଯ୍ୟାଦୂତୀ, ମୂକ ଦୂତୀ ଓ ବାତଦୂତୀ—ଏହି ଆଠ ପ୍ରକାର ଦୂତୀ ବିଷୟ ଉଲ୍ଲେଖ କରିଛନ୍ତି । * ଏଥି ମଧ୍ୟରୁ ଲଳିତାକୁ ନିସୃଷ୍ଟାର୍ଥା ଦୂତୀ ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇପାରେ । ପ୍ରେମ ବ୍ୟାପାରରେ ନାୟକ-ନାୟିକାଙ୍କର ମନୋଭାବ ହୃଦୟଙ୍ଗମ କରି ନିସୃଷ୍ଟାର୍ଥା ଦୂତୀ ଆପଣା ବୁଦ୍ଧି ବଳରେ ସେମାନଙ୍କର ମିଳନ ଘଟାଇଥାଏ । ଚମ୍ପୂ କାବ୍ୟରେ ଲଳିତା ତାହା ହିଁ ସଫଳତାର ସହିତ କରି ପାରିଛି । ହାବଭାବରୁ ରାଧାକୃଷ୍ଣଙ୍କ ମନୋଭାବ ଜାଣିବାରେ ସେ ଅଦ୍ୱିତୀୟା । ବୁଦ୍ଧି ଓ ଚତୁରତା ବଳରେ ସେ ଯେପରି ସେମାନଙ୍କୁ ମିଳନ ମଞ୍ଚ ଆଡ଼କୁ ଘେନି ଯାଇଛି, ତାହା ରସିକ ପାଠକସମାଜକୁ ବିସ୍ମୟମୁଗ୍ଧ କରିବ । ଆଳଙ୍କାରିକ ବିଶ୍ୱନାଥ କବିରାଜ ମଧ୍ୟ ଦୂତୀର ଗୁଣ ନିରୂପଣ କରି କହିଛନ୍ତି—

କଳାକୌଶଳମୁତ୍ସାହୋ ଭକ୍ତିଶ୍ଚିତ୍ତଜ୍ଞତା ସ୍ମୃତିଃ
ମାଧୁର୍ଯ୍ୟନର୍ମ ବିଜ୍ଞାନଂ ବାଗ୍ମିତା ଚେତି ତଦ୍‌ଗୁଣାଃ ॥
—ସାହିତ୍ୟ ଦର୍ପଣ : ତୃତୀୟ ପରିଚ୍ଛେଦ ।

ଅର୍ଥାତ୍ ପ୍ରଣୟ ବ୍ୟାପାରରେ ଦୂତୀ ପ୍ରେମିକ-ପ୍ରେମିକାଙ୍କର ଅଭିପ୍ରାୟ ବୁଝି କାର୍ଯ୍ୟ କରିବ, ପ୍ରେମିକ-ପ୍ରେମିକାଙ୍କଠାରେ ଭକ୍ତି ବା ଅନୁରକ୍ତି ପ୍ରକାଶ କରୁଥିବ; ସେ କଳାବିଦ୍ୟାରେ ନିପୁଣା, ଉତ୍ସାହୀ, ସ୍ମରଣଶକ୍ତି-ସମ୍ପନ୍ନା, ମଧୁର ସ୍ୱଭାବବିଶିଷ୍ଟା ହୋଇଥିବ; ହାସ୍ୟ-କୌତୁକ ଓ ଚାତୁର୍ଯ୍ୟୋକ୍ତିରେ ମଧ୍ୟ ହୋଇଥିବ ଧୁରୀଣା । ବୋଲିବା ବାହୁଲ୍ୟ ଯେ—କବିସୂର୍ଯ୍ୟଙ୍କର ଦୂତୀ ଲଳିତା

* ବାତ୍ସ୍ୟାୟନ—ପ୍ରଣୀତ 'କାମସୂତ୍ରମ୍'—ଅନୁ : ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା, ଶିରୋମଣି ମୁଦ୍ରାଳୟ, ବ୍ରହ୍ମପୁର (୧୯୭୨)—ପୃଷ୍ଠା ୩୨୧-୨୬

ଅନୁରୂପ 'ଗୁଣରେ ଭୂଷିତା ହୋଇଛନ୍ତି । କେବଳ ତାହାର ମଧୁର ସ୍ୱଭାବ ବିଷୟରେ କେହି କେହି ପ୍ରଶ୍ନ ଉଠାଇ ପାରନ୍ତି । ରାଧାଙ୍କ ପ୍ରତି 'ଖପ୍ପର ଭୁ ହେଲୁ', 'ଶ୍ୟାମ ସ୍ନେହ ଜାଣି ଫୁଲଗଲୁ' ପ୍ରଭୃତି ଏବଂ ଶ୍ରୀକୃଷ୍ଣଙ୍କ ପ୍ରତି 'ଛଳବାହିମାଣ', 'ପରଘରବୁଡ଼ା ଫରମାସ' ଇତ୍ୟାଦି ଉକ୍ତି କରିଥିଲେ ମଧ୍ୟ ଆମେମାନେ ଜାଣୁଁ—ଏହା ସବୁ ଲଳିତାର ତୁଣ୍ଡର କଥା ମାତ୍ର, ଅନ୍ତରର ବାଣୀ ନୁହେଁ । ଲଳିତା ପ୍ରକୃତରେ ମଧୁର ସ୍ୱଭାବ-ସମ୍ପନ୍ନା ଦୂତୀ । ଠ-ଗୀତର ସଂସ୍କୃତ ଶ୍ଳୋକରେ ଶ୍ରୀକୃଷ୍ଣଙ୍କ ତୁଣ୍ଡରେ ଲଳିତାର ଏହି ସବୁ ଗୁଣ କୀର୍ତ୍ତିତ ହୋଇଛନ୍ତି ।

ଆମର ଅନେକ କୃଷ୍ଣ-ଲୀଳାତ୍ମକ କାବ୍ୟ-କବିତାରେ ଲଳିତା ଚରିତ୍ରର ଗୁରୁତ୍ୱ ଓ ମହନୀୟତା ପ୍ରତିପାଦିତ ହୋଇ ନାହିଁ । କବିଗୁରୁ ରବୀନ୍ଦ୍ରନାଥଙ୍କ ଭାଷାରେ କହିବାକୁ ଗଲେ, ବହୁ ସ୍ଥଳରେ ସେ ବିଚାରୀ 'କାବ୍ୟର ଉପେକ୍ଷିତା' ହୋଇ ରହି ଯାଇଛନ୍ତି । ''କାବ୍ୟସଂସାରରେ ଏପରି ଜଣେ ଦୁଇ ଜଣ ରମଣୀ ଅଛନ୍ତି, ଯେଉଁମାନେ କବିଙ୍କଦ୍ୱାରା ସମ୍ପୂର୍ଣ୍ଣ ଉପେକ୍ଷିତ ହୋଇ ମଧ୍ୟ ଅମରଲୋକରୁ ଭ୍ରଷ୍ଟ ହୋଇ ନାହାନ୍ତି । ପକ୍ଷପାତ-କୃପଣ କାବ୍ୟ ସେମାନଙ୍କ ପାଇଁ ସ୍ଥାନ-ସଂକୋଚ କରିଦେଇଛନ୍ତି ବୋଲି, ପାଠକ-ହୃଦୟ ଅଗ୍ରସର ହୋଇ ସେମାନଙ୍କୁ ଆସନ ଦାନ କରିଛନ୍ତି ।'' —(ରବୀନ୍ଦ୍ରନାଥଙ୍କ 'କାବ୍ୟେର ଉପେକ୍ଷିତା' ପ୍ରବନ୍ଧରୁ ଗୃହୀତ) କବିସୂର୍ଯ୍ୟଙ୍କର ଲଳିତା ଚରିତ୍ରଟି ବିଚାର କଲାବେଳେ ଏହି କଥା ମନରେ ପଡ଼େ । କିନ୍ତୁ ଚମ୍ପୂ କାବ୍ୟରେ ଲଳିତା ଉପେକ୍ଷିତା ହୋଇ ନାହିଁ କିମ୍ବା ତାହା ପାଇଁ କାବ୍ୟ ମଧ୍ୟରେ ସ୍ଥାନ ସଂକୋଚ ଘଟି ନାହିଁ । କବିସୂର୍ଯ୍ୟଙ୍କ ହୃଦୟରେ ଏକ କୋମଳ କୋଣ ଅଧିକାର କରି ସେ ତ ବିରାଜମାନ ଥିଲା ! ଏବେ ଚମ୍ପୂର ଅଗଣିତ ପାଠକ ଓ ଶ୍ରୋତାଙ୍କ ହୃଦୟରେ ସେ ସଗୌରବ ଆସନ ଲାଭ କରିଛନ୍ତି ।

**ଶ୍ରୀକୃଷ୍ଣ**—ଚମ୍ପୂ କାବ୍ୟରେ ଶ୍ରୀକୃଷ୍ଣ 'ଯଶୋଦା-ବାଳ' ନୁହନ୍ତି, 'ଗୋପବନ୍ଧୁ' କିମ୍ବା 'ଗୋପୀନାଥ' ମଧ୍ୟ ନୁହନ୍ତି; କେବଳ 'ରାଧାମୋହନ' ବା 'ରାଧାବଲ୍ଲଭ' ରୂପେ କବିସୂର୍ଯ୍ୟ ତାଙ୍କୁ ଉପସ୍ଥାପିତ କରିଛନ୍ତି । ତେଣୁ ରାଧାଙ୍କର ବିଦଗ୍ଧ ପ୍ରେମିକ ସ୍ୱଭାବରେ ଶ୍ରୀକୃଷ୍ଣ ଚରିତ୍ରର ରୂପାୟନ କେତେଦୂର ସାର୍ଥକ ହୋଇଛନ୍ତି, ତାହାହିଁ ଏଠାରେ ଆମର ଆଲୋଚ୍ୟ । ରାଧାଙ୍କୁ ବାତାୟନ

ପଥରେ ଦେଖିବା ପରେ ଶ୍ରୀକୃଷ୍ଣ ତାଙ୍କ ସହିତ ମିଳନ ପାଇଁ କପରି ବ୍ୟାକୁଳ ହୋଇ ପଡ଼ିଥିଲେ, ତାହା "ପିଇ ଦିଅନ୍ତି କା ଗୋଟିଯାକ ସେ କଶୋଷିକ" ପ୍ରଭୃତି ଉକ୍ତିରୁ ଜଣାପଡ଼େ । ଦୂତି ଲଳିତାଙ୍କ ପ୍ରତି ସେଥିପାଇଁ ତାଙ୍କର ଅନୁନୟ, ବିନୟ, ଗୂଢ଼ବାକ୍ୟାଦି ସ୍ୱାଭାବିକ ହୋଇଛି । ପ୍ରଣୟ-ବ୍ୟାପାରରେ ରାଧାଙ୍କ ଉକ୍ତି ଅନୁଯାୟୀ ସେ ଯଥାର୍ଥରେ ଧୂର୍ତ୍ତ ପୁରୁଷମାନଙ୍କର ଗୁରୁ । ମିଳନ ପରେ ମଧୁମଙ୍ଗଳଙ୍କ ପରିହାସର ଉତ୍ତର ଦେଇ ଶ୍ରୀକୃଷ୍ଣ ଯାହା କହିଛନ୍ତି (ଗୋପନ ମିଳନ କଥା ପ୍ରଘଟ୍ଟ ନ କରିବାକୁ ଦୁଧିଆଳୀ ଗାଈ ଲାଞ୍ଚ ଯାଚିବା ଆଦି କଥା—ସ-ଗୀତ), ତହିଁରୁ ତାଙ୍କର ଧୂର୍ତ୍ତତା ପ୍ରମାଣିତ ହୁଏ ।

ନିଜକୁ ରାଧାଙ୍କର "ପୟୋଧର ମରଦନିଆ ଗୃକର" କିମ୍ବା ରାଧାଙ୍କ ପାଦର ଅଳତା ନିଜର ଶିରୋଭୂଷଣ ବୋଲି ଶ୍ରୀକୃଷ୍ଣ ଯାହା କହିଛନ୍ତି, ତାହା ଏକାନ୍ତ ଭାବରେ ପ୍ରେମିକ-ସୁଲଭ । ଅନ୍ତରଙ୍ଗ ପ୍ରଣୟ କ୍ଷେତ୍ରରେ ଏହା ଅତ୍ୟନ୍ତ ସ୍ୱାଭାବିକ । 'ଗୀତଗୋବିନ୍ଦ'ର ଦଶମ ସର୍ଗରେ କବି ଜୟଦେବ ମାନିନୀ ରାଧାଙ୍କ ସମକ୍ଷରେ ଶ୍ରୀକୃଷ୍ଣଙ୍କୁ ଅନୁରୂପ ଭାବରେ ବୋଲାଇଛନ୍ତି—

ସ୍ଥଳକମଳଗଞ୍ଜନଂ ମମ ହୃଦୟରଞ୍ଜନଂ
ଜନିତରତିରଙ୍ଗପରଭାଗମ୍
ଭଣ ମସୃଣବାଣି କରବାଣି ଚରଣଦ୍ୱୟଂ
ସରସଲସଦଲକ୍ତକରାଗମ୍ ॥
ସ୍ମରଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦପଲ୍ଲବ ମୁଦାରମ୍
ଜ୍ୱଳତି ମୟି ଦାରୁଣୋ ମଦନକଦନାନଳୋ
ହରତୁ ତଦୁପାହିତ ବିକାରମ୍ ॥

ଅର୍ଥାତ୍—ମଧୁରଭାଷିଣୀ, ତମେ ଆଦେଶ ଦିଅ, ସ୍ଥଳ ପଦ୍ମର ଶୋଭାହରଣକାରୀ, ମୋ ହୃଦୟର ଶୋଭାବର୍ଦ୍ଧକ ଏବଂ ରତିରଙ୍ଗରେ ପରମ ରମଣୀୟ ତମର ଏ ପାଦଯୋଡ଼ିକ ମୁଁ ଅଲକ୍ତକ ରାଗରେ ରଞ୍ଜିତ କରିଦିଏଁ । କାମବିଷ-ବିନାଶ-କାରୀ ଏବଂ ମୋର ଶିରୋଭୂଷଣ ତମର ସୁନ୍ଦର ପଦ ପଲ୍ଲବ ଏ ମସ୍ତକରେ ସ୍ଥାପନ କର ! ମୋର ଅନ୍ତର ଦାରୁଣ ମଦନାନଳରେ ଜଳୁଛି । ତମର ଚରଣ-ସ୍ପର୍ଶ ସେ ବିକାର ଦୂର କରୁ ! ଜୟଦେବଙ୍କ ପୂର୍ବରୁ ମଧ କବି ଭବଭୂତି

'ଉତ୍ତର ରାମଚରିତ' ନାଟକର ପ୍ରଥମ ଅଙ୍କରେ ସେହିପରି ଏକ ଚମତ୍କାର ଘଟଣା ସନ୍ନିବେଶିତ କରିଛନ୍ତି । ଦୁର୍ମୁଖଠାରୁ ସୀତାଙ୍କ ବିଷୟରେ ଲୋକାପବାଦ ଶୁଣିଲା ପରେ ରାମ ପତ୍ନୀ-ନିର୍ବାସନ ସିଦ୍ଧାନ୍ତ ଗ୍ରହଣ ପୂର୍ବକ ଶାୟିତା ସୀତାଙ୍କର ପାଦକୁ ଆପଣା ମସ୍ତକରେ ଛୁଆଁଇ କହିଛନ୍ତି—ହା ଦେବି, ରାମ ମସ୍ତକରେ ତୁମ ପାଦପଦ୍ମର ଏହା ହିଁ ଶେଷ ସ୍ପର୍ଶ ! (ଅୟଂ ପଶ୍ଚିମସ୍ତେ ରାମସ୍ୟ ଶିରସା ପାଦପଙ୍କଜ-ସ୍ପର୍ଶଃ ।)

ପ୍ରେମିକ ହିସାବରେ ଶ୍ରୀକୃଷ୍ଣଙ୍କର ଲୌକିକ ଓ ମାନବୀୟିତ ରୂପ ଅଙ୍କନ କରିଥିଲେହେଁ, କବିସୂର୍ଯ୍ୟ ତାଙ୍କର ଅଲୌକିକ ଦେବୀୟିତ ରୂପର ମଧ୍ୟ ସୂଚନା ଦେଇଛନ୍ତି । କାବ୍ୟର ମଙ୍ଗଳାଚରଣ (ପରମ ପୁରୁଷ, ସର୍ବେଶ୍ୱର ଇତ୍ୟାଦି) ଏବଂ କ୍ଷ-ଗୀତରେ (ଧରଣୀର-ହରଣ, ଚରାଚର ଶରଣ ପ୍ରଭୃତି) ତାହା ସୁପରିସ୍ଫୁଟ ହୋଇଛି । କିନ୍ତୁ କାବ୍ୟ ମଧ୍ୟରେ ତାହା ପ୍ରାଧାନ୍ୟ ଲାଭ କରି ନାହିଁ । ଏହାର କାରଣ—ବୈଷ୍ଣବ ମତରେ ସ୍ୱାମୀ-ସ୍ତ୍ରୀ, ମାତା-ପୁତ୍ର, ପ୍ରଭୁ-ଦାସ ପ୍ରଭୃତି ବିଭିନ୍ନ ମାନବୀୟ ସମ୍ପର୍କ ମଧ୍ୟରେ ଆରାଧ୍ୟ ଦେବତାଙ୍କୁ ଆପଣାର କରିବା ଆବଶ୍ୟକ । ଭଗବାନଙ୍କ ସହିତ ଭକ୍ତର ଏହି ନିକଟ ଆତ୍ମୀୟ ସମ୍ପର୍କ ପ୍ରତିଷ୍ଠା ବୈଷ୍ଣବ ଧର୍ମର ମୂଳ କଥା ଏବଂ ସମୁଦାୟ ବୈଷ୍ଣବ କାବ୍ୟ-କବିତା ଏହି ମଧୁର ସମ୍ପର୍କର ଜୟଗାନରେ ମୁଖର । ପୃଥିବୀର ଅନ୍ୟ କେତେକ ଧର୍ମମତରେ ମଧ୍ୟ ଉକ୍ତ ବିଭାବ ପରିଲକ୍ଷିତ ହୁଏ । ଏହି ଧର୍ମୀୟ ପରମ୍ପରା ପୃଷ୍ଠଭୂମିରେ, ପୁଣି ସାରସ୍ୱତ ସୃଷ୍ଟି ଦୃଷ୍ଟିରୁ ଚମ୍ପୂରେ କବିସୂର୍ଯ୍ୟ ଶ୍ରୀକୃଷ୍ଣଙ୍କ ଚରିତକୁ ମୁଖ୍ୟତଃ ଲୌକିକ ଓ ମାନବୀୟିତ କରି ଅଙ୍କନ କରିଛନ୍ତି ।

ସଂସ୍କୃତ ଅଳଙ୍କାର ଶାସ୍ତ୍ର ଅନୁଯାୟୀ ଶ୍ରୀକୃଷ୍ଣଙ୍କୁ ଧୀର-ଲଳିତ, ଦକ୍ଷିଣ ନାୟକ ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇପାରେ । ଚିନ୍ତାଶୂନ୍ୟ, ନୃତ୍ୟସଙ୍ଗୀତାଦିରେ ଆସକ୍ତ, କୋମଳ ପ୍ରକୃତିର ପୁରୁଷ ହିଁ ଧୀର-ଲଳିତ ଶ୍ରେଣୀର । ଶ୍ରୀକୃଷ୍ଣଙ୍କର ବଂଶୀବାଦନ, ତ୍ରିଭଙ୍ଗୀ ଠାଣି ଏବଂ ଲଳିତା-ରାଧାଙ୍କ ସହିତ କଥୋପକଥନରୁ ଧୀର-ଲଳିତ ନାୟକ-ଗୁଣର ପରିଚୟ ମିଳେ । ପୁଣି ବିଭିନ୍ନ ପ୍ରେମିକାଙ୍କଠାରେ ଆସକ୍ତ ଥିବାରୁ ଶ୍ରୀକୃଷ୍ଣ ଦକ୍ଷିଣ ନାୟକ । ପଣ୍ଡିତ କୁଳମଣି ଦାଶଙ୍କ ମତାନୁଯାୟୀ ତାଙ୍କୁ ଅନୁକୂଳ ନାୟକ କହିବା ଯୁକ୍ତିଯୁକ୍ତ ମନେ ହେଉ ନାହିଁ । କାରଣ ଚମ୍ପୂର ବିଭିନ୍ନ ଗୀତରେ ତଥା ସଂସ୍କୃତ ରଚନାରେ

ତ୍ରୀଙ୍କର ଏକାଧିକ ରମଣୀ-ପ୍ରୀତି ସୂଚିତ ହୋଇଛି (ହ-ଗୀତର ସଖୀମାନଙ୍କ ଉକ୍ତି, ଭ-ଗୀତର ସଂସ୍କୃତାଂଶରେ ଲଳିତାଙ୍କ ଉକ୍ତି ପ୍ରଭୃତି ଏ ପ୍ରସଙ୍ଗରେ ଦ୍ରଷ୍ଟବ୍ୟ) ।

**ରାଧା**—ପରୋଢ଼ା ପରକୀୟା ନାୟିକା । ପ୍ରଥମ ଦର୍ଶନରେ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ଗଭୀର ଅନୁରାଗ "ମଜ୍ଜିଯିବି କି ଉଭା ରତିରେ" ଉକ୍ତିରୁ ଜଣାପଡ଼େ । ସେ ପୁଣି ଏଠାରେ ମୁଗ୍‌ଧା, ସ୍ୱାଧୀନ-ଭର୍ତ୍ତୃକା ରୂପେ ଚିତ୍ରିତା ହୋଇଛନ୍ତି । ତାଙ୍କର ରୂପଗୁଣରେ ଶ୍ରୀକୃଷ୍ଣ ଆକୃଷ୍ଟ; ସଖୀ ଲଳିତା ସମକ୍ଷରେ ସେ କୃଷ୍ଣପ୍ରେମ ପାଇଁ ବିଚିତ୍ର ହାବ-ଭାବ ପ୍ରକାଶ କରିଛନ୍ତି । ଲଳିତା ତାଙ୍କର 'ଦନ୍ତ ଦେଖି' ସାରି ପ୍ରକୃତ କଥା ପ୍ରକାଶ କଲା ପରେ ସେ ଆନନ୍ଦ-ଗଦ୍‌ଗଦ ହୋଇ କହିଛନ୍ତି—"ଧୀରି ରେ, କି ଧନ ତୁ ନ ଦେଲୁ ଆଜ !" ପ୍ରେମ ବା ପ୍ରଣୟ ସମ୍ପର୍କରେ ରାଧାଙ୍କର କେତେକ ଉକ୍ତି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ; ଯଥା—

ପରବଶ ହେବ ଯେବେ ପ୍ରାଣ ତୁଲେ ଦେହ, ପ୍ରାଣୀ କି କରିବ କହ ଗୋ ।

ଏକେ ଜଣେ ଯେ ଯାହାକୁ ସ୍ନେହେ ବଡ଼ ତା'ଠାରୁ ଜୀବନ ନୋହେ
ବଳ ତାହାଠାରେ ସିନା ସହେ !

କବିସୂର୍ଯ୍ୟ ରାଧାଙ୍କୁ କୃଷ୍ଣପ୍ରେମ-ପାଗଳିନୀ ରୂପେ ଚିତ୍ରଣ କରିଥିଲେ ହେଁ ଜୟଦେବଙ୍କ 'ଗୀତଗୋବିନ୍ଦ'ରେ ଅଭିସାରିକା, ବାସକସଜ୍ଜା, ଖଣ୍ଡିତା, ବିପ୍ରଲବ୍‌ଧା ପ୍ରଭୃତି ରୂପେ ରାଧା ଚରିତ୍ରର ଯେଉଁ ବୈଚିତ୍ର୍ୟ ପ୍ରକଟିତ ହୋଇଛି, ଚମ୍ପୂରେ ସେପରି ହୋଇ ପାରି ନାହିଁ । ମଧୁର ରସର ଘନୀଭୂତ ବିଗ୍ରହ ରୂପେ ରାଧା ବୈଷ୍ଣବ ସାହିତ୍ୟରେ ବହୁଳ ଭାବରେ କୀର୍ତ୍ତିତା ହୋଇଛନ୍ତି । ବୈଷ୍ଣବ ଧର୍ମର ରୁଦ୍ର ଓ ସନକ ସମ୍ପ୍ରଦାୟରେ ଏବଂ ଶ୍ରୀଚୈତନ୍ୟ-ପ୍ରବର୍ତ୍ତିତ ନବ-ବୈଷ୍ଣବ ଧର୍ମରେ ରାଧା ସୁପ୍ରତିଷ୍ଠିତା; ବିଶେଷତଃ ଚୈତନ୍ୟମତରେ ରାଧାଭାବ 'ସାଧ୍ୟ-ଶିରୋମଣି' । ରାଧାଭାବର ଅନ୍ୟ ନାମ ମହାଭାବ; ଏଥିରେ ଗୋପୀଭାବର ଚରମ ଓ ପରିପୂର୍ଣ୍ଣ ପ୍ରକାଶ । 'ଗୁପ୍' (ରକ୍ଷା କରିବା) ଧାତୁରୁ ଗୋପୀ ଶବ୍ଦର ଉତ୍ପତ୍ତି । ରାଧାକୃଷ୍ଣଙ୍କର ପ୍ରେମଲୀଳାକୁ ଯେଉଁମାନେ ରକ୍ଷା କରନ୍ତି, ସେହିମାନେ ହିଁ ଗୋପୀ । ରାଧା ମଧ୍ୟ ଜନୈକା ଗୋପୀ । କିନ୍ତୁ ଚୈତନ୍ୟ-ମତରେ ଗୋପୀ-ଗଣଙ୍କ ମଧ୍ୟରେ ତାଙ୍କର ଶ୍ରେଷ୍ଠତା ରହିଛି । ଚୈତନ୍ୟଚରିତାମୃତରେ କୁହାଯାଇଛି—

ମହାଭାବ ସ୍ୱରୂପା ଶ୍ରୀରାଧା ଠାକୁରାଣୀ
ସର୍ବଗୁଣ-ଖଣି କୃଷ୍ଣ-କାନ୍ତାଶିରୋମଣି ।
× × × ×
କାମଗନ୍ଧହୀନ ସ୍ୱାଭାବିକ ଗୋପୀପ୍ରେମ
ନିର୍ମଳ ଉଜ୍ଜ୍ୱଳ ଶୁଦ୍ଧ ଯେମନ ଦଗ୍‌ଧ ହେମ ।
ସେଇ ଗୋପୀଗଣ ମଧ୍ୟେ ଉତ୍ତମା ରାଧିକା
ରୂପେ ଗୁଣେ ସୌଭାଗ୍ୟେ ପ୍ରେମେ ସର୍ବାଧିକା—ଆଦିଲୀଳା ।

କିଶୋରଚନ୍ଦ୍ରାନନ୍ଦ ଚଂପୂରେ ରାଧା ଚରିତ୍ରର ଅନୁରୂପ ଗୁରୁତ୍ୱ ଉପଲବ୍‌ଧି କରି ହୁଏ ନାହିଁ । ଚରିତ୍ରଟି ଯେଉଁକି ଚିତ୍ରିତ ହୋଇଛି, ତହିଁରୁ ରାଧାଙ୍କର ଲୌକିକ ଓ ମାନବୀୟ ରୂପ ପ୍ରକଟିତ ହେଉଛି । କେବଳ ମ-ଗୀତରେ ଏବଂ ସଂସ୍କୃତ ରଚନାଂଶର କେତେକ ସ୍ଥଳରେ ତାଙ୍କର ଦେବୀପ୍ରିତ, ତାତ୍ତ୍ୱିକ ରୂପ ସୂଚିତ ହୋଇଛି ।

**ମଧୁମଙ୍ଗଳ ଏବଂ ଅନ୍ୟାନ୍ୟ ସଖୀ**—ଏମାନେ ଚମ୍ପୂ କାବ୍ୟର ଗୌଣ ଚରିତ୍ର । ରାଧା ଓ ଶ୍ରୀକୃଷ୍ଣଙ୍କ ଚରିତ୍ରକୁ ସୁପରିସ୍ଫୁଟ କରିବା ଏବଂ ସେମାନଙ୍କ ମିଳନକୁ ସମୃଦ୍ଧ ଓ ବୈଚିତ୍ର୍ୟମଣ୍ଡିତ କରିବା ଉଦ୍ଦେଶ୍ୟରେ ଏମାନଙ୍କର ଅବତାରଣା କରାଯାଇଛି । ସାନ୍ଦୀପନି ମୁନିଙ୍କ ପୁତ୍ର ମଧୁମଙ୍ଗଳ ଶ୍ରୀକୃଷ୍ଣଙ୍କ ପ୍ରିୟସଖା, ରାଧାଙ୍କ ସହିତ ମିଳନ ପରେ ଶ୍ରୀକୃଷ୍ଣଙ୍କର ବିପର୍ଯ୍ୟସ୍ତ ବେଶ ଓ ଚେହେରା ଦେଖି ସେ ଥଟ୍ଟା ପରିହାସ କରିଛନ୍ତି । "ଶଶି-କିଶୋରୀଟିକି ଦେଲ ଯେ ସାର" "ଶିରୀଷମାଳା ଦଳି ଦେଇ କୁଠାରେ ଶଙ୍କା ନ କଲ ସଖାମାନଙ୍କଠାରେ" ପ୍ରଭୃତି ତାଙ୍କର ବ୍ୟଙ୍ଗୋକ୍ତି ଶ୍ରୀକୃଷ୍ଣଙ୍କ ପକ୍ଷରେ ଟିକିଏ ଖିନ୍ନପ୍ରଦ ହୋଇଛି । ତେଣୁ ଶ୍ରୀକୃଷ୍ଣ ରକ୍ତନୟନ ପକାଇ ମଧୁମଙ୍ଗଳକୁ ଅନୁନୟ-ବିନୟ କରିଛନ୍ତି—

ସାଧୁଜନ କୁକ୍ଷି-କୂପେ ଭଲ-ମନ୍ଦ ସିନା ଛପେ
ସଂହରି କ୍ରୋଧ ଉଦୟ, ସହଜେ ତୁ ସହୃଦୟ ।
ସବୁ ଅନ୍ୟାୟ ଚରିତ ଶିକ୍ଷାକୁ ଗୁରୁ ତୁହି ତ
ସମୟେ କାହିଁ ତୋଟିକି, ସଖା ଲକ୍ଷଣ ଏଟି କି !

ରାୟ ରାମାନନ୍ଦଙ୍କର 'ଜଗନ୍ନାଥବଲ୍ଲଭ ନାଟକ'ରେ ମଧୁମଙ୍ଗଳକୁ ବିଦୂଷକ ଚରିତ୍ର ରୂପେ ଅବସ୍ଥାପିତ କରାଯାଇଛି । ନାଟକରେ ହାସ୍ୟରସର

ଉଦ୍‌ବୋଧନ ପାଇଁ ଚରିତ୍ରଟିର ଅବତାରଣା କରାଯାଇ ଥିବାର ଜଣାପଡ଼େ । ଶ୍ରୀକୃଷ୍ଣଙ୍କ ଚରିତ୍ର ଉପରେ ମଧୁମଙ୍ଗଳ ଆଲୋକପାତ କରିଛି । ରାୟ ରାମାନନ୍ଦ ଓ କବିସୂର୍ଯ୍ୟ ଉଭୟେ ଏକା ଉଦ୍ଦେଶ୍ୟରେ ମଧୁମଙ୍ଗଳ ଚରିତ୍ର ନିଜ ନିଜ ରଚନାରେ ସନ୍ନିବେଶିତ କରିଥିଲେ ହେଁ, ଚଂପୂରେ ଚରିତ୍ରଟି ସୁପରିସ୍ଫୁଟ ହୋଇ ପାରି ନାହିଁ ।

'ଜଗନ୍ନାଥବଲ୍ଲଭ ନାଟକ'ରେ ମଦନିକା ବ୍ୟତୀତ ରାଧାଙ୍କର ସଖୀ ଭାବରେ ଶଶିମୁଖୀ, ଅଶୋକମଞ୍ଜରୀ, ମାଧବିକା ପ୍ରଭୃତି ଗୌଣ ଚରିତ୍ର ସୃଷ୍ଟି କରା ଯାଇଛି । କିନ୍ତୁ ଚମ୍ପୂରେ କବିସୂର୍ଯ୍ୟ ସେହିପରି କୌଣସି ନାମଧେୟା ସଖୀ ଚରିତ୍ରର ସମାବେଶ ନ କରି 'କାଳିନ୍ଦୀ ବ୍ରଜଦେବୀ', 'ସଖୀଗଣ' ଆଦି ନାମରେ କେତେକ ଗୌଣ ଚରିତ୍ର ସନ୍ନିବେଶିତ କରିଛନ୍ତି । ଏମାନେ ମିଳନ ପରେ ରାଧାଙ୍କ ସହିତ ଥଟ୍ଟା-ପରିହାସ କରିଛନ୍ତି (ର ଏବଂ ବ-ଗୀତ), ଶ୍ରୀକୃଷ୍ଣଙ୍କର ରୂପ-ଗୁଣ ବର୍ଣ୍ଣନା କରିଛନ୍ତି ଏବଂ କୃଷ୍ଣ-ପ୍ରୀତି ପାଇଁ ଆଗ୍ରହୀ ହୋଇଛନ୍ତି (ଷ ଏବଂ ହ-ଗୀତ) । ଶ୍ରୀକୃଷ୍ଣ ତଥା ରାଧା ଚରିତ୍ର ପ୍ରକଟନରେ ଏମାନଙ୍କର ସହାୟତା ଉଲ୍ଲେଖଯୋଗ୍ୟ । ସଖୀମାନଙ୍କ ଭାଷାରେ—ପ୍ରେମ ପଥରେ ରାଧା ନିର୍ଭୀକା—"ବିଭାବରୀ ଅର୍ଦ୍ଧେ ଏକାକୀ ଏକାକୀ" ଫୁଲ ତୋଳନ୍ତି—"ପ୍ରତିରାତି ଆସି ଘଟୁ ବିଜନେ ସଞ୍ଚରଣ" କରନ୍ତି । ସେ ପୁଣି କଳାବତୀ, ବିନୟୀ ଓ ନୀତିରେ ନିପୁଣା । ସେହିପରି ସଖୀଗଣଙ୍କ ଉକ୍ତି ଅନୁସାରୀ—ଶ୍ରୀକୃଷ୍ଣ "ତାପିଞ୍ଛର ଅନାତପ" ( ତମାଳ ଗଛର ଛାୟା ଅର୍ଥାତ୍ ଆଶ୍ରୟ-ସ୍ଥଳ ), "ସ୍ମରସରଦାର", "ଯୁବତୀ ଜୀବନ" ଏବଂ "ହଜାର ସଂଖ୍ୟକ ହେଲେ ହେଲେହେଁ ମଦନ ନୋହିବ ଏ ମୋହନ ସମାନ ।"

## ରସ-ଉଦ୍‌ବୋଧନ

ଚଂପୂର ସ୍ୱରୂପ-ପ୍ରକୃତି ଅନୁସାରେ କବିସୂର୍ଯ୍ୟ ଆପଣା ଚଂପୂ କାବ୍ୟରେ ଶୃଙ୍ଗାର ଓ ଶାନ୍ତ ରସର ଉଦ୍‌ବୋଧନ ପାଇଁ ପ୍ରୟାସ କରିଛନ୍ତି । କାବ୍ୟାରମ୍ଭରେ ସଂସ୍କୃତ ଭାଷାର ମଙ୍ଗଳାଚରଣରେ ଏବଂ କାବ୍ୟ-ଶେଷରେ କ୍ଷ-ଗୀତରେ ସେ ଶ୍ରୀକୃଷ୍ଣ ଓ ରାଧାଙ୍କ ପ୍ରତି ନିଜର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ନିବେଦନ କରିଛନ୍ତି । ଏହା ପାଠକମାନଙ୍କୁ ଭକ୍ତିଭାବ ବା ଶାନ୍ତ ରସରେ ଉଦ୍‌ବୁଦ୍ଧ କରିପାରେ । କିନ୍ତୁ ଚଂପୂରେ ଗୌଣତଃ ଶାନ୍ତରସର

ଉଦ୍‌ବୋଧନ କରାଯାଇଛି; ମୁଖ୍ୟତଃ ଶୃଙ୍ଗାର ରସର ଉଦ୍‌ବୋଧନ କବିଙ୍କର ଲକ୍ଷ୍ୟ । ରାଧାକୃଷ୍ଣଙ୍କର ପ୍ରଣୟ-ଲୀଳା ପରିବେଷଣରେ ବିରହ ଓ ମିଳନର ଚିତ୍ର ସାଧାରଣତଃ କବିମାନେ ଅଙ୍କନ କରି ଥାଆନ୍ତି; ତେଣୁ ସମ୍ଭୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ଶୃଙ୍ଗାର ଉଭୟର ଉଦ୍‌ବୋଧନ କରାଯାଇଥାଏ । କିନ୍ତୁ ଚଂପୂରେ କବିସୂର୍ଯ୍ୟ ବିପ୍ରଲମ୍ଭ ଶୃଙ୍ଗାର ବିଷୟରେ ଧ୍ୟାନ ଦେଇ ନାହାନ୍ତି, ପାଠକ-ହୃଦୟରେ ସମ୍ଭୋଗ ଶୃଙ୍ଗାର ରସର ଉଦ୍‌ବୋଧନ ପାଇଁ ତାଙ୍କର ସମସ୍ତ ଶକ୍ତି ବ୍ୟୟିତ ହୋଇଛି । ଅବଶ୍ୟ ଲଳିତାର ଚତୁରତା ଏବଂ ବୈଚିତ୍ର୍ୟପୂର୍ଣ୍ଣ ଉକ୍ତି ଫଳରେ ଚଂପୂ ମଧ୍ୟରେ ବେଳେ ବେଳେ ରାଧା ଓ ଶ୍ରୀକୃଷ୍ଣଙ୍କ ହୃଦୟରେ ଯେଉଁ ଦୁଃଖ, ନିରାଶା ଏବଂ ଦ୍ୱନ୍ଦ୍ୱ ଭାବ ସୃଷ୍ଟି ହୋଇଛି, ତହିଁରେ ବିପ୍ରଲମ୍ଭ ଶୃଙ୍ଗାରର ଉଦ୍‌ବୋଧନ ହୋଇପାରେ । ମାତ୍ର ତାହା ଅତ୍ୟନ୍ତ କ୍ଷୀଣ ଓ ନଗଣ୍ୟ ।

ଶୃଙ୍ଗାରିକତା ରୀତି-ସାହିତ୍ୟର ଏକ ବିଶେଷ ଲକ୍ଷଣ । ସାମାଜିକ ବା କାଳ୍ପନିକ ବିଷୟବସ୍ତୁ ହେଉ, ଅଥବା ଧର୍ମୀୟ ବା ପୌରାଣିକ କଥାବସ୍ତୁ ହେଉ ଉଭୟ କ୍ଷେତ୍ରରେ ରୀତି-କବିମାନେ ଶୃଙ୍ଗାରିକତାର ପ୍ରବଳ ବନ୍ୟା ଖେଳାଇ ଦେଇଛନ୍ତି କହିଲେ ଚଳେ । ବାସ୍ତବିକ, ଶୃଙ୍ଗାରିକତା ରୀତି-କାବ୍ୟର ସ୍ନାୟୁରେ ପ୍ରବାହିତ ରକ୍ତଧାରା । ଏଥିରେ ଅନ୍ତରଙ୍ଗ ପ୍ରେମର ଏକନିଷ୍ଠତା ପରିବର୍ତ୍ତେ ଭୋଗ-ବିଳାସର ଐନ୍ଦ୍ରିୟ ରସିକତା—ସୂକ୍ଷ୍ମ ଆନ୍ତରିକତା ଅପେକ୍ଷା ସ୍ଥୂଳ ଶାରୀରିକତା ଅଧିକ ପରିଲକ୍ଷିତ ହୁଏ । * ଧର୍ମୀୟ କଥାବସ୍ତୁରେ—ଦେବ-ଦେବୀଙ୍କ ଚରିତ୍ର ରୂପାୟନରେ ମଧ୍ୟ ରୀତିକବିମାନେ ସାଧାରଣତଃ ଏହି ଶୃଙ୍ଗାରିକ ଦୃଷ୍ଟିକୋଣ ପ୍ରକଟିତ କରିଛନ୍ତି । କବିସୂର୍ଯ୍ୟ ରୀତିକାବ୍ୟର ଏହି ବିଶେଷ ଲକ୍ଷଣଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ପୁଣି କବି ଜୟଦେବଙ୍କ ଗୀତ-ଗୋବିନ୍ଦର ଆଦର୍ଶ ତାଙ୍କ ଆଗରେ ବିଦ୍ୟମାନ ଥିଲା । ତେଣୁ ଚମ୍ପୂ କାବ୍ୟରେ ସେ ଶୃଙ୍ଗାରିକତାର ଅବତାରଣା କରିଛନ୍ତି । ତଥାପି ଏ କ୍ଷେତ୍ରରେ ସେ ଜୟ-ଦେବଙ୍କ ଅପେକ୍ଷା ସଂଯମ ଓ ମିତାଚାରର ଅବଲମ୍ବନ କରିଥିବାର ଜଣାପଡ଼େ । ଗୀତଗୋବିନ୍ଦର ବିଭିନ୍ନ ସ୍ଥାନରେ ବିଶେଷତଃ ଦ୍ୱାଦଶ ସର୍ଗରେ ରାଧାକୃଷ୍ଣଙ୍କ କେଳି ବର୍ଣ୍ଣନା ସହିତ ଚମ୍ପୂର ଅନୁରୂପ କେଳି ବର୍ଣ୍ଣନାକୁ ତୁଳନା କଲେ, ଏହାର ପ୍ରମାଣ ମିଳିବ ।

* ଛନ୍ଦ କାବ୍ୟ କୀ ଭୂମିକା—ଡକ୍ଟର ନଗେନ୍ଦ୍ର, ଗୌତମ ବୁକ୍ ଡିପୋ, ଦିଲ୍ଲୀ (୧୯୪୯)—ପୃଷ୍ଠା ୧୫୮-୫୯ ।

ବୈଷ୍ଣବମାନଙ୍କ ଦୃଷ୍ଟିରେ—ରାଧାକୃଷ୍ଣଙ୍କର ପ୍ରଣୟ-ଲୀଳା ଭକ୍ତ-ଭଗବାନଙ୍କର ପ୍ରେମ ଲୀଳା । ତେଣୁ ବୈଷ୍ଣବ ଅଳଙ୍କାରଶାସ୍ତ୍ରରେ କୃଷ୍ଣପ୍ରେମ-ମୂଳକ ଶୃଙ୍ଗାର ରସ—ମଧୁର ରସ, ଉଜ୍ଜ୍ୱଳ ରସ, ଭକ୍ତି ରସ ପ୍ରଭୃତି ନାମରେ ଚିହ୍ନିତ ହୋଇଛି ଏବଂ ଏହାକୁ ଶ୍ରେଷ୍ଠ ରସ ବା 'ରସରାଜ' ବୋଲି ଯାଇଛି । କେହି କେହି ଏହାକୁ ଏକମାତ୍ର ରସ ବୋଲି ମଧ୍ୟ ଗ୍ରହଣ କରିଛନ୍ତି । ଅନ୍ୟାନ୍ୟ ଆଳଙ୍କାରିକଙ୍କ ଦୃଷ୍ଟିରେ ରସ ହେଉଛି—'ବ୍ରହ୍ମାସ୍ୱାଦ-ସହୋଦର' । ମାତ୍ର ବୈଷ୍ଣବ ଆଳଙ୍କାରିକଙ୍କ ମତରେ ଏହି କୃଷ୍ଣପ୍ରେମାତ୍ମକ ଶୃଙ୍ଗାର ରସ ହେଉଛି—'ବ୍ରହ୍ମାସ୍ୱାଦ ସ୍ୱୟଂ' । ବୈଷ୍ଣବ କାବ୍ୟକବିତା ବା କୃଷ୍ଣ ସାହିତ୍ୟର ଶୃଙ୍ଗାରିକତା ଆଲୋଚନାବେଳେ ଆମକୁ ଏହି ଆଭିମୁଖ୍ୟ ବିଷୟରେ ସଚେତନ ରହିବାକୁ ପଡ଼ିବ । ତାହାହେଲେ ଶ୍ରୀକୃଷ୍ଣଙ୍କ ସହିତ 'ଉଭ ରତିରେ' ମିଳିସିବା ପାଇଁ ରାଧାଙ୍କ ଅଭିଳାଷ, କିମ୍ବା ରାଧାକୃଷ୍ଣଙ୍କ ମିଳନ କାଳରେ "ମଧୁ ମଧୁର ବିଧୁ ଅଧର କିଶୋରବର ରଦନାମ୍ବର ବିମ୍ବ ଚିମ୍ବନ ଚୁଁ-କୃତ ସ୍ତନମେଳା", ଅଥବା ରାଧାଙ୍କର 'ଲଗିଶାଢ଼ୀ' ଶ୍ରୀକୃଷ୍ଣ ଲୁଚାଇ ରଖିବା, ଏପରିକି 'କ୍ଷୀର ସାଗରସମ୍ଭବା-କୁଚକୁମ୍ଭ ଯୁଗଳ—ପରିରମ୍ଭ-ଚତୁର' ବୋଲି ସ୍ୱୟଂ କବି-ସୂର୍ଯ୍ୟଙ୍କର ଶ୍ରୀକୃଷ୍ଣ-ପ୍ରାର୍ଥନା ଆଦି ଚମ୍ପୂ-ବର୍ଣ୍ଣିତ ଘଟଣାର ଅବବୋଧ କଷ୍ଟକର ହେବ ନାହିଁ ।

କିନ୍ତୁ କେବଳ ଧର୍ମୀୟ ଦୃଷ୍ଟିକୋଣରୁ କୃଷ୍ଣକାବ୍ୟର ଶୃଙ୍ଗାରିକତା ବିଚାର କରିବା ଉଚିତ ହେବ ନାହିଁ । ଏହି କାବ୍ୟପୁଷ୍ପ କେବଳ ଦେବଦେବୀଙ୍କ ଅର୍ଘ୍ୟ ପାଇଁ ଉଦ୍ଦିଷ୍ଟ ନୁହେଁ, ସାଧାରଣ ନରନାରୀଙ୍କର ବ୍ୟବହାର-ଉପଯୋଗୀ ହୋଇପାରେ ମଧ୍ୟ । କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଏକ ସାରସ୍ୱତ ସୃଷ୍ଟି ଏବଂ ସେହି କାରଣରୁ ଏହା ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟ ବା ଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ ହୋଇ ରହି ନ ପାରେ । ପ୍ରତ୍ୟେକ ସହୃଦୟ ପାଠକ ଏଥିରେ ପ୍ରବେଶ କରିବାର ବା ଏହା ଗ୍ରହଣ କରିବାର ଅଧିକାର ଧାରଣ କରନ୍ତି । ସେଥିପାଇଁ କବିସୂର୍ଯ୍ୟ ମଧ୍ୟ ଦେବତାଙ୍କୁ ମଣିଷ କରି, ତାଙ୍କର ପ୍ରଣୟ ଲୀଳାକୁ ଲୌକିକ ଓ ମାନବୀୟ ରୂପ ପ୍ରଦାନ କରିଛନ୍ତି । ବିଚିତ୍ର ସାଂସାରିକ ପ୍ରେମର ବିଭିନ୍ନ ବିଭବ-ସଂପର୍କରେ କବିଙ୍କର ସକଳ ଅନୁଭୂତି-ଅଭିଜ୍ଞତା ରାଧାକୃଷ୍ଣଙ୍କ ପ୍ରଣୟ-ଲୀଳା ମଧ୍ୟରେ ପ୍ରକାଶିତ ହୋଇଛି । ଦେବଦେବୀ-ସଂପର୍କିତ ଶୃଙ୍ଗାରିକତା ଉପରେ କବି "ତୁଳସୀ ପତ୍ର ପକାଇ ପବିତ୍ର କରିବା" ଯୁକ୍ତି, କିମ୍ବା ବଳଦେବଙ୍କୁ

'ତୁଳସୀ ପତ୍ରିଆ କବି' ଅଭିଧାନରେ ଚହ୍ନିତ କରିବା ପ୍ରୟାସ ସେଥିପାଇଁ ଉଚିତ ମନେ ହେଉ ନାହିଁ । ଏହି ପ୍ରସଙ୍ଗରେ କବିଗୁରୁ ରବୀନ୍ଦ୍ରନାଥଙ୍କର ବିଖ୍ୟାତ 'ବୈଷ୍ଣବ କବିତା' ('ସୋନାର୍ ତରୀ' କାବ୍ୟ-ସଙ୍କଳନର ଅନ୍ତର୍ଭୁକ୍ତ) ଆମର ସ୍ମରଣୀୟ—

ଶୁଧୁ ବୈକୁଣ୍ଠେର ତରେ ବୈଷ୍ଣବେର ଗାନ !
ପୂର୍ବରାଗ, ଅନୁରାଗ, ମାନ-ଅଭିମାନ,
ଅଭିସାର, ପ୍ରେମଲୀଳା, ବିରହ-ମିଲନ,
ବୃନ୍ଦାବନ ଗାଥା—ଏଇ ପ୍ରଣୟ-ସ୍ୱପନ
ଶ୍ରାବଣେର ଶର୍ବରୀତେ କାଳିନ୍ଦୀର କୂଲେ
ଚାରିଚକ୍ଷେ ଚେୟେ ଦେଖା କଦମ୍ବେର ମୂଲେ
ଶରମେ ସମ୍ଭ୍ରମେ, ଏ କି ଶୁଧୁ ଦେବତାର !

× × ×

ସତ୍ୟ କରେ କହୋ ମୋରେ ହେ ବୈଷ୍ଣବ କବି,
କୋଥା ତୁମି ପେୟେଛିଲେ ଏଇ ପ୍ରେମଛବି ?
କୋଥା ତୁମି ଶିଖେଛିଲେ ଏଇ ପ୍ରେମଗାନ
ବିରହତାପିତ ହେରି କାହାର ନୟାନ
ରାଧିକାର ଅଶ୍ରୁ-ଆଁଖି ପଡ଼େଛିଲ ମନେ ?
ବିଜନ ବସନ୍ତ ରାତେ ମିଲନ-ଶୟନେ
କେ ତୋମାରେ ବେନ୍ଧେଛିଲ ଦୁଟି ବାହୁଡ଼ୋରେ
ଆପନାର ହୃଦୟେର ଅଗାଧ ସାଗରେ
ରେଖେଛିଲ ମଗ୍ନ କରି ? ଏତ ପ୍ରେମ କଥା
ରାଧିକାର ଚିତ୍ତଦୀର୍ଣ୍ଣ ତୀବ୍ର ବ୍ୟାକୁଳତା
ଚୁରି କରି ଲଇୟାଛ କାର ମୁଖ, କାର
ଆଁଖି ହତେ ? ଆଜ ତାର ନାହି ଅଧିକାର
ସେ ସଙ୍ଗୀତେ ! ତାରି ନାରୀ-ହୃଦୟ ସଞ୍ଚିତ
ତାର ଭାଷା ହତେ ତାରେ କରିବେ ବଞ୍ଚିତ
ଚିରଦିନ ! × × ×

*

## ମର୍ମବାଣୀ

'କିଶୋରଚନ୍ଦ୍ରାନନ୍ଦ ଚଂପୂ'ର ମର୍ମବାଣୀ କଣ ? ଏହି କାବ୍ୟରେ କବିସମ୍ରାଟଙ୍କର କୌଣସି ବକ୍ତବ୍ୟ ବା ଜୀବନ-ଦର୍ଶନ ପ୍ରକଟିତ ହୋଇଛି କି ? କାବ୍ୟଟି କୃଷ୍ଣାପ୍ରଣ ସତ୍ୟ—ଏଥିରେ ଧର୍ମୀୟ କଥାବସ୍ତୁ ଗୃହୀତ ହୋଇଛି ସତ୍ୟ, ତଥାପି ଏହାକୁ ଧର୍ମ-ନିରପେକ୍ଷ ରଚନା ବୋଲିବା ଯଥାର୍ଥ ହେବ । କବିସମ୍ରାଟ ବୈଷ୍ଣବ ଧର୍ମ ପ୍ରତି ଆଗ୍ରହୀ ବା ଆକୃଷ୍ଟ ହୋଇଥାଇ ପାରନ୍ତି, କିନ୍ତୁ ନିଜେ ସେହି ଧର୍ମରେ ଦୀକ୍ଷିତ ହୋଇଥିବାର ପ୍ରମାଣ ମିଳେ ନାହିଁ । ନିଜର ପୃଷ୍ଠପୋଷକ ବୈଷ୍ଣବ ଧର୍ମାବଲମ୍ବୀ ଆଠଗଡ଼ ରାଜା ହରିଚନ୍ଦନ ଜଗଦ୍ଦେବଙ୍କ ସନ୍ତୋଷ-ବିଧାନ ପାଇଁ କିମ୍ବା ତାଙ୍କର ଅଭିଳାଷ ଅନୁଯାୟୀ ସେ ଚଂପୂକାବ୍ୟଟି ରଚନା କରିଥିବାର ଜଣାପଡ଼େ । ସେ ମଧ୍ୟ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ବିଭିନ୍ନ ଜଣାଣ, ଏବଂ ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ମାଳଶ୍ରୀ ରଚନା କରିଛନ୍ତି । ତେଣୁ ତାଙ୍କୁ କୌଣସି ନିର୍ଦ୍ଦିଷ୍ଟ ଧର୍ମର ପରିଧି ମଧ୍ୟରେ ଆବଦ୍ଧ କରିବା ଉଚିତ ହେବ ନାହିଁ, ଏବଂ ତଦନୁଯାୟୀ ତାଙ୍କର କାବ୍ୟ-କୃତିକୁ ସେହି ଧର୍ମାନୁଗ ବୋଲି ବିହିତ କରିବା ସମୀଚୀନ ହେବ ନାହିଁ । ଏହି ପ୍ରସଙ୍ଗରେ ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ—ପ୍ରାଚୀନ ସାହିତ୍ୟର ଆଲୋଚନା ବେଳେ ଆମେ ଅନେକ ସମୟରେ ତାହାର ଧର୍ମଧାରା ବା କବିଙ୍କ ଧର୍ମମତର ଚର୍ଚ୍ଚା ଉପରେ ଅଯଥା ଗୁରୁତ୍ୱ ଆରୋପ କରୁଛୁଁ, ସାହିତ୍ୟର କଳା-ପକ୍ଷ ବା ସାରସ୍ୱତ ମୂଲ୍ୟାୟନ ପ୍ରତି ଉପଯୁକ୍ତ ଧ୍ୟାନ ଦେଇ ପାରୁ ନାହୁଁ । ଆମର ସମାଲୋଚନା-ସାହିତ୍ୟରେ ଏହା ନିଶ୍ଚିତ ଭାବେ ଏକ ଭ୍ରାମାତ୍ମକ ଦୃଷ୍ଟିକୋଣ । "ସାହିତ୍ୟ ରସାସ୍ୱାଦନ ବେଳେ ଧର୍ମ-ଦର୍ଶନର ଲକ୍ଷ୍ୟ ଚରମ କିମ୍ବା ପରମ ହେବା ଆଦୌ ଉଚିତ ନୁହେଁ । ଧର୍ମ ଓ ଧର୍ମମୂଳକ ସାହିତ୍ୟ—ଏ ଦୁହେଁ ଯେ ସ୍ୱତନ୍ତ୍ର ଓ ଦୁହିଁଙ୍କର ଲକ୍ଷ୍ୟ ଏବଂ କାର୍ଯ୍ୟ ଯେ ଭିନ୍ନ, ଏଇ ବିଷୟରେ ଆମର ବିଚାରବୁଦ୍ଧି ଠିକ୍ ରହେ ନାହିଁ ବୋଲି ଆମେ ସାହିତ୍ୟରେ ସାହିତ୍ୟ ଅପେକ୍ଷା ଆଧ୍ୟାତ୍ମିକ ଅର୍ଥଟିକୁ ବିଶେଷ ଭାବରେ ଦେଖିବାକୁ ପାଉଁ । ଫଳରେ ଏମିତି ସମାଲୋଚନାର ତ ଗୌରବ ବଢ଼େନି, ଧର୍ମ ଦର୍ଶନର ବି କୌଣସି ଲାଭ ହୁଏନି ।" *

* ଓଡ଼ିଆ ବୈଷ୍ଣବ ସାହିତ୍ୟ—ଡକ୍ଟର ନଟବର ସାମନ୍ତରାୟ, ବାଣୀଭଣ୍ଡାର, କଟକ (୧୯୫୯)—ପୃଷ୍ଠା ୧୬୯

କବିସୂର୍ଯ୍ୟ ବଳଦେବ ଏଠାରେ ଭକ୍ତ ଓ ପ୍ରେମିକ ରୂପେ ବିଦ୍ୟମାନ । ନିଜର ଆରାଧ୍ୟ ଦେବତା—ସେ ଶ୍ରୀକୃଷ୍ଣ, ଜଗନ୍ନାଥ ବା ମଙ୍ଗଳା ଚଣ୍ଡୀ ହୁଅନ୍ତୁ —କବିଙ୍କର ପୂଜାପ୍ରଦ ଓ ଭକ୍ତିଭାଜନ । ଆପଣା ଅନ୍ତରର ସକଳ ଆବେଗ, ଅନୁଭୂତି କାବ୍ୟ ସୃଷ୍ଟି ମାଧ୍ୟମରେ କଳାମଣ୍ଡିତ ରୂପରେ ସେ ତାଙ୍କର ଚରଣ ତଳେ ନିବେଦନ କରି ଯାଇଛନ୍ତି । ଚମ୍ପୂର ମଙ୍ଗଳାଚରଣ ଏବଂ କ୍ଷ-ଗୀତରେ ଏକଥାର ପ୍ରମାଣ ମିଳିବ । ଭକ୍ତ-ସୁଲଭ ଆତ୍ମନିବେଦନ, ବିନୟ, ସହିଷ୍ଣୁତା, ନିରହଂକାର ପ୍ରଭୃତି ଭାବରାଜି ଏଥିରେ ସୁପରିସ୍ଫୁଟ । କବିଙ୍କର ପ୍ରେମିକ ରୂପ ପରୋକ୍ଷ ଭାବରେ ରାଧାକୃଷ୍ଣଙ୍କ ପ୍ରଣୟ-ଲୀଳା ମଧ୍ୟରେ ପ୍ରକଟିତ ହୋଇଛି। (ଏ ସମ୍ପର୍କରେ ପୂର୍ବରୁ ଉଦ୍ଧୃତ ରବୀନ୍ଦ୍ରନାଥଙ୍କ କବିତା ଦ୍ରଷ୍ଟବ୍ୟ) । ଜଣେ ପ୍ରେମିକର ଆଶା, ଆଶଙ୍କା, ହୃଦୟ-ମନ୍ଥନ, ରସିକତା ଓ ବିଦଗ୍ଧ ଭଙ୍ଗୀ କାବ୍ୟର ଛନ୍ଦେ ଛନ୍ଦେ ପ୍ରକାଶ ପାଇଛି । ଦିବ୍ୟପ୍ରେମ ଓ ମାନବପ୍ରେମ ପରସ୍ପର ବିରୋଧୀ ନୁହନ୍ତି—ମାନବୀୟ ପ୍ରେମର ଉନ୍ନୀତ-କରଣରେ ବା ଊର୍ଦ୍ଧ୍ୱଗତିରେ ହିଁ ଈଶ୍ୱରୀୟ ପ୍ରେମ ସମ୍ଭବ ହୋଇପାରେ—ଏହି ମର୍ମବାଣୀ ଯେପରି ଚମ୍ପୂ ମଧ୍ୟରେ ଅଭିବ୍ୟଞ୍ଜିତ ହୋଇ ଉଠିଛି !

## ରଚନା-ଶୈଳୀ

କବିସୂର୍ଯ୍ୟ ବଳଦେବ ଏହି ଖଣ୍ଡକାବ୍ୟ ରଚନାରେ ଚମ୍ପୂ-ଶୈଳୀ ତଥା ଗୀତିକାବ୍ୟ-ଶୈଳୀ ଅନୁସରଣ କରିଛନ୍ତି । ଗୀତି-ସାହିତ୍ୟ ଆଙ୍ଗିକ-ପ୍ରଧାନ ବୋଲି ପୂର୍ବରୁ ସୂଚିତ ହୋଇଛି (ପୃଷ୍ଠା ୭୨-୭୫ ଦ୍ରଷ୍ଟବ୍ୟ) । କିଶୋରଚନ୍ଦ୍ରା-ନନ୍ଦ ଚମ୍ପୂରେ ମୂଳରୁ ଚୂଳଯାଏ ଆଙ୍ଗିକର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । କବିସୂର୍ଯ୍ୟ କାବ୍ୟ-ଆତ୍ମାର ଉତ୍କର୍ଷ ଅପେକ୍ଷା କାବ୍ୟ-ଶରୀରର ଅଳଙ୍କରଣ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । କାବ୍ୟର କଥାବସ୍ତୁ ସ୍ୱଳ୍ପ ଓ ସରଳ—କବିଙ୍କର ବକ୍ତବ୍ୟ ସାମାନ୍ୟ ଓ ସଂକ୍ଷିପ୍ତ, କିନ୍ତୁ ଚମତ୍କାର ପ୍ରକାଶଭଙ୍ଗୀ ଏହାକୁ ଏକ ଉଚ୍ଚକୋଟୀର କାବ୍ୟର ମର୍ଯ୍ୟାଦା ପ୍ରଦାନ କରିଛି; 'ଶୈଳୀର ବିଶେଷତ୍ୱ ହିଁ କବିଙ୍କର ସ୍ୱାତନ୍ତ୍ର୍ୟ' ଏହି ବିଚାରରେ କବିସୂର୍ଯ୍ୟ ତତ୍କାଳୀନ କବିମଣ୍ଡଳୀ ମଧ୍ୟରେ ଏକ ବିଶିଷ୍ଟ ସ୍ଥାନର ଅଧିକାରୀ ହୋଇଛନ୍ତି । ତାଙ୍କର ସମକାଳୀନ କବି ଅଭିମନ୍ୟୁ ସାମନ୍ତସିଂହାର, ଭକ୍ତଚରଣ ଦାସ, ଭୀମ ଭୋଇ, ଗୋପାଳ-କୃଷ୍ଣ ପ୍ରମୁଖଙ୍କ ମଧ୍ୟରେ ସେ ଅନନ୍ୟ ରୂପେ ବାରି ହୋଇ ପଡ଼ିଛନ୍ତି । ତାଙ୍କ କାବ୍ୟରେ କବି ଅଭିମନ୍ୟୁଙ୍କର ପାଣ୍ଡିତ୍ୟ ଓ ବିଦଗ୍ଧ ଭଙ୍ଗୀ ପ୍ରକାଶିତ ହୋଇ-

ଥିଲେହେଁ, ସେ ସମ୍ପୂର୍ଣ୍ଣ ରୂପେ 'ଅଭିମନ୍ୟୁ' ନୁହନ୍ତି । ଅଥବା କବି ଗୋପାଳ-କୃଷ୍ଣଙ୍କର ସରଳ ସାବଲୀଳ ଶୈଳୀ ତାଙ୍କର ସାହିତ୍ୟ-ସୃଷ୍ଟିରେ ପରିଲକ୍ଷିତ ହେଲେହେଁ, ସେ ସମ୍ପୂର୍ଣ୍ଣଭାବେ 'ଗୋପାଳକୃଷ୍ଣ' ନୁହନ୍ତି । ସର୍ବୋପରି ସେ ଆମ ସାହିତ୍ୟରେ ଚମ୍ପୂ ଶୈଳୀର ନୂତନ ପରୀକ୍ଷା ପାଇଁ ଯେଉଁ ସାହସିକ ପଦକ୍ଷେପ ଗ୍ରହଣ କରିଛନ୍ତି, ତାଙ୍କର ସମସାମୟିକ ଏହି କବିମାନେ ସେପରି କରିଥିବାର ଜଣାଯାଏ ନାହିଁ ।

**ବର୍ଣ୍ଣନା-ବିଭବ**—ଚମତ୍କାର ବର୍ଣ୍ଣନା ଚମ୍ପୂ ରଚନା-ଶୈଳୀର ଏକ ବିଶେଷତ୍ୱ । ଅଥଚ କାବ୍ୟଟିକୁ ଠିକ୍ ବର୍ଣ୍ଣନା-ପ୍ରଧାନ କହି ହେବ ନାହିଁ । ଖଣ୍ଡକାବ୍ୟର ସୀମିତ ପରିସର ମଧ୍ୟରେ ଯେତିକ ସମ୍ଭବ, କବି ସ୍ୱୟଂ ସେତିକ ଦୃଶ୍ୟ, ରୂପ ବା ଘଟଣାର ସୁନ୍ଦର ବର୍ଣ୍ଣନା ଚମ୍ପୂରେ ସନ୍ନିବେଶିତ କରିଛନ୍ତି । ଙ-ଗୀତ ତଥା ଭ-ଗୀତରେ ଲଳିତାଙ୍କ ତୁଣ୍ଡରେ କୃଷ୍ଣରୂପ ବର୍ଣ୍ଣନା, ମ-ଗୀତରେ ରାଧାକୃଷ୍ଣଙ୍କର ମିଳନ ବର୍ଣ୍ଣନା, ଷ-ଗୀତ ତଥା ହ-ଗୀତରେ ଗୋପୀମାନଙ୍କ ମୁଖରେ ଯମୁନା କୂଳସ୍ଥ ସଖା-ପରିବେଷ୍ଟିତ ଶ୍ରୀକୃଷ୍ଣଙ୍କର ବର୍ଣ୍ଣନା ବେଶ୍ ମନୋଜ୍ଞ ହୋଇଛି । ଉଦାହରଣ ସ୍ୱରୂପ—

ନୀଳୋତ୍ପଳ ବାସି ହେଲା ପରି ଦିଶି ଯାଉଛି ଦୂରୁ ଶ୍ରୀଅଙ୍ଗ
ନାସା ନାଳ ତିଳ ଫୁଲରୁ ଅନଳ ପ୍ରସରୁଛି ବେଗ ବେଗ । (ଙ)

ଅଥବା—

ସଞ୍ଚରଣଶୀଳ ନବ ତମାଳ ଭୂରୁହ
ସଙ୍ଗେ ଯେଉଁ ଆସୁଅଛି ସଖା-ଶାଖିବ୍ୟୂହ
ଶୁକ ଶାରୀ ପରିଭଳି
ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ । (ଷ)

ଏଭଳି ବିଦଗ୍ଧ ବର୍ଣ୍ଣନା-ଭଙ୍ଗୀ ପ୍ରାଚୀନ ସାହିତ୍ୟରେ ବିଶେଷ ପରିଲକ୍ଷିତ ହୁଏ ନାହିଁ । ରାଧାକୃଷ୍ଣଙ୍କ ମିଳନାରମ୍ଭରେ ମଧୁଋତୁର ସୂଚନାତ୍ମକ ବର୍ଣ୍ଣନା (ମ-ଗୀତରେ) ଚମ୍ପୂ କାବ୍ୟର ଏକ ଆକର୍ଷଣୀୟ ବିଭବ । କବି ଜୟଦେବ 'ଗୀତଗୋବିନ୍ଦ'ରେ ଯେଉଁପରି ରାଧାକୃଷ୍ଣଙ୍କ ପ୍ରଣୟଲୀଳାର ପୃଷ୍ଠପଟରେ 'ସରସ ବସନ୍ତ'ର ବର୍ଣ୍ଣନା କରିଛନ୍ତି ଏବଂ ରାୟ ରାମାନନ୍ଦ 'ଜଗନ୍ନାଥବଲ୍ଲଭ ନାଟକ'ରେ ସେହି ଲକ୍ଷ୍ୟରେ ବସନ୍ତ ଋତୁର ଅବତାରଣା କରିଛନ୍ତି ।

ରାଧାକୃଷ୍ଣଙ୍କ ମିଳନ ବର୍ଣ୍ଣନା କବିସୂର୍ଯ୍ୟଙ୍କ ଲେଖନୀରେ ଜୀବନ୍ତ ହୋଇ ଉଠିଛି । 'ଗୀତଗୋବିନ୍ଦ'ର ଅନୁରୂପ ବର୍ଣ୍ଣନା ଭଳି, ଏ ବର୍ଣ୍ଣନାରେ କବିସୂର୍ଯ୍ୟ ସଂଯମ ଓ ମିତାଚାରର ଲଙ୍ଘନ କରି ନାହାନ୍ତି; କିମ୍ବା 'ଜଗନ୍ନାଥବଲ୍ଲଭ ନାଟକ'ର ଅନୁରୂପ ବର୍ଣ୍ଣନା ସଦୃଶ, ଏ ବର୍ଣ୍ଣନା ସଂକ୍ଷିପ୍ତ ଓ ବୈଚିତ୍ର୍ୟହୀନ ନୁହେଁ । ରାୟ ରାମାନନ୍ଦ ଆପଣା ନାଟକର ପଞ୍ଚମ ଅଙ୍କରେ ମଦନିକାଙ୍କ ସଂଳାପ ମଧ୍ୟରେ ରାଧାକୃଷ୍ଣଙ୍କ ମିଳନ ବର୍ଣ୍ଣନା କରି କେବଳ ଏତିକି ଲେଖିଛନ୍ତି—

ମିଳିତମିଦଂ କିଲ ତନୁଯୁଗଳଂ ପୁନରପି ନ କିଞ୍ଚନ ଭେଦଂ
ବିଷମଶରାଶୁଗ-କୀଳିତମିବ ସଖି ଗଳିତଚିରନ୍ତନ ଖେଦଂ ॥
ନଖରରଦାବଳି ଖଣ୍ଡିତମପି ଗୁରୁ ନିଶ୍ୱସିତାପ୍ଲୁତ ଭୁତଂ
ରୁଦ୍ରଗଜାଧିପମୁଦମାତନୁତାଂ ରାମାନନ୍ଦବସୁସୁଗୀତଂ ॥

ଅର୍ଥାତ୍ (ଶେଷ ଧାଡ଼ି—ଭଣିତା-ପାଦ ବାଦ୍ ଦେଇ) ଉଭୟଙ୍କର ଦେହ ଏପରି ମିଳିତ ହେଲା ଯେ ତହିଁରେ ସାମାନ୍ୟତମ ଭେଦ ରହିଲା ନାହିଁ । କନ୍ଦର୍ପ-ଶର ଦ୍ୱାରା ତାହା କୀଳିତ ହୋଇ ରହିଲା । ତାହାଦ୍ୱାରା ଦେହ ଦୁଇଟିର ଚିରନ୍ତନ ଦୁଃଖ ଦୂର ହେଲା । ଖରତର ନଖ ଓ ଦନ୍ତାଘାତରେ ସେହି ତନୁଯୁଗଳ କ୍ଷତବିକ୍ଷତ ହୋଇ ଉଭୟ-ବିସ୍ତାର ପୂର୍ବକ ଘନ ଘନ ନିଶ୍ୱାସ ବହନ କରିବାରେ ଲାଗିଲା । ଏହା ସହିତ ଚମ୍ପୂର ମ-ଗୀତରେ ପ୍ରଦତ୍ତ ମିଳନ ବର୍ଣ୍ଣନା ତୁଳନା କଲେ, କବିସୂର୍ଯ୍ୟଙ୍କ ବର୍ଣ୍ଣନା-ବିଭବର ମହତ୍ତ୍ୱ ଓ କଳା-ପାଟବ ସହଜରେ ପ୍ରତିପାଦିତ ହୋଇ ପାରିବ ।

**ଆଳଙ୍କାରିକତା**—ରୂପ, ଦୃଶ୍ୟ ବା ଘଟଣା ବର୍ଣ୍ଣନାରେ ବିଭିନ୍ନ ଅଳଙ୍କାରର ପ୍ରୟୋଗ ସାଧାରଣ ରୀତିକାବ୍ୟ ସଦୃଶ ଚମ୍ପୂର ରଚନା ଶୈଳୀରେ ମଧ୍ୟ ପରିଲକ୍ଷିତ ହୁଏ । କବିସୂର୍ଯ୍ୟ ଏ କ୍ଷେତ୍ରରେ ଆମର ରୀତି-ସାହିତ୍ୟ ଦ୍ୱାରା ତ ପ୍ରଭାବିତ ହୋଇଛନ୍ତି ! ତାହା ସଙ୍ଗେ ସଙ୍ଗେ ସଂସ୍କୃତ ସାହିତ୍ୟବିଦ୍ୟାର ଆଚାର୍ଯ୍ୟମାନଙ୍କ ଦ୍ୱାରା ଉପସ୍ଥାପିତ ଏ ସମ୍ପର୍କୀୟ ଆଦର୍ଶରେ ମଧ୍ୟ ଅନୁପ୍ରାଣିତ ହୋଇଛନ୍ତି । * ଅଳଙ୍କାର ପ୍ରୟୋଗରେ ଆଧିକ୍ୟ ବା ବାହୁଲ୍ୟ ସେ ପ୍ରାୟ

---

* ଆଚାର୍ଯ୍ୟ ଭାମହ—ନ କାନ୍ତମପି ନିର୍ଭୂଷଂ ବିଭାତି ବନିତା ମୁଖମ୍ ।
(ଅନଳଙ୍କୃତ ହୋଇଥିଲେ ସୁନ୍ଦର ବନିତା-ମୁଖ ମଧ୍ୟ ଶୋଭା ପାଏନା ।)
ଆଚାର୍ଯ୍ୟ ବାମନ—କାବ୍ୟଂ ଗ୍ରାହ୍ୟମଲଙ୍କାରାତ୍ ।
(ଅଳଙ୍କାରଦ୍ୱାରା ହିଁ କାବ୍ୟ ଗ୍ରହଣଯୋଗ୍ୟ ହୋଇଥାଏ ।)

ସର୍ବଥା ପରିତ୍ୟାଗ କରିନାହାନ୍ତି । ଯେତିକି ବା ଯେଉଁ ପରିମାଣରେ ଅଳଙ୍କୃତା ହେଲେ କାବ୍ୟସୁନ୍ଦରୀ ସୁଶୋଭିତା ହେବ, ତାହା ଜଣେ ପ୍ରଥମ ଶ୍ରେଣୀର ଶିଳ୍ପୀ ରୂପେ ସେ ହୃଦୟଙ୍ଗମ କରିଥିଲେ । ଶ୍ରୀକୃଷ୍ଣଙ୍କ ପ୍ରତି ରାଧାଙ୍କର ଅନୁରାଗ ଦେଖି ଲଳିତା ଯେଉଁଠି "ଖରାପ ତୁ ହେଲୁ ରେ" କହି ଧିକ୍କାରିବାର ଛଳନା କରିଛନ୍ତି, ସେଠାରେ ଦୃଷ୍ଟାନ୍ତ, ଅତିଶୟୋକ୍ତି ଆଦି ଅଳଙ୍କାର ବ୍ୟବହାରରେ ଲଳିତାର ଧିକ୍କାର ରସୋତ୍ତୀର୍ଣ୍ଣ ହୋଇ ଉଠିଛି । ସେହିପରି ଶ-ଗୀତରେ ଶ୍ରୀକୃଷ୍ଣଙ୍କ ପ୍ରତି ମଧୁମଙ୍ଗଳର ପରିହାସମୂଳକ ଉକ୍ତି ବିଭିନ୍ନ ଅଳଙ୍କାର ପ୍ରୟୋଗରେ ପ୍ରଭାବଶାଳୀ ହୋଇଛି । ଏହା ବ୍ୟତୀତ 'ଗଙ୍ଗାରୁ ବିଶଦ ଗମ୍ଭୀର ତୋ ହୃଦ', 'ଗଣ୍ଡି ଗର୍ଭେ ଗୁଳ ଗଲା ପରି ଗଳ', 'ଘଟୀ ସରିକ କରେ ନାହିଁ କି ବିବେକରେ ମହାର୍ଣ୍ଣବରେ ଅବଗାହିଲୁ', 'ଚପାଶିତ ପରି ଥିଲ ବସି', 'ଜ୍ୱଳନରୁ ବଳି ସେହିବଦନୁ କେଳି କରେ ବିମ୍ବବର୍ଣ୍ଣ-ନାହା-କର', 'ଠିକ୍ ଠ ବର୍ତ୍ତୁଳ ଚନ୍ଦ୍ରାନନା', 'ଡାଳିମ୍ବମଞ୍ଜି ମଞ୍ଜୁଳ ଦଶନା', 'ଅତସୀକୁସୁମ ସମ ଶ୍ୟାମ', 'ଦ୍ୱିତୀୟାର ଶଶିଲେଖା ପରି ଦଶିଲେ ଲଳିନ ସେ ଇନ୍ଦ୍ରନୀଳହାରି', 'ନବ ନୀରଜ-କୋଷ ନିଭ ତୋ କୁଚ', 'ଭୂଷିତ ନବରତ୍ନ କୁଣ୍ଡଳ ଯୁଗ ଛବି', 'ବଲ୍ଲୀ-ନଳିନୀ ବିହାର ଲୋଳା', 'ସତେଜ ସୁନ୍ଦର ବେଶା', 'ତରା-ବର-କରଣ ବରାବର ଚରଣ-ନଖାଂଶୁ ସୁରଗଣ ଶିଖାଭରଣ' ପ୍ରଭୃତି ବହୁ ପଙ୍କ୍ତିରେ ଶବ୍ଦାଳଙ୍କାର ତଥା ଅର୍ଥାଳଙ୍କାରର ସୁଷମ ବ୍ୟବହାର ଚମ୍ପୂର କାବ୍ୟିକ ମର୍ଯ୍ୟାଦା ବୃଦ୍ଧିରେ ସହାୟତା କରିଛି ।

**ସାଙ୍ଗୀତିକତା ଓ ନାଟକୀୟତା**—ସଙ୍ଗୀତ ସହ ଆମ ପ୍ରାଚୀନ ସାହିତ୍ୟର ସମ୍ପର୍କ ଅତି ନିବିଡ଼ । ଆମର ସମସ୍ତ ଛାନ୍ଦ କାବ୍ୟ, କୋଇଲି, ଚଉତିଶା, ଭକ୍ତି-ଗୀତିକା, ଚଉପଦୀ ପ୍ରଭୃତି ମୁଖ୍ୟତଃ ଗୀତ ରୂପେ ଗାଇବା ପାଇଁ ଉଦ୍ଦିଷ୍ଟ ଥିଲା । ଗୀତିକାବ୍ୟରେ ମଧ୍ୟ ଏହି ସାଙ୍ଗୀତିକ ଶୈଳୀ ଗୃହୀତ ହୋଇଥିଲା । ସେହି ପରମ୍ପରା ଅନୁସରଣରେ କବିସୂର୍ଯ୍ୟ ଚମ୍ପୂ କାବ୍ୟର ସାଙ୍ଗୀତିକ ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିଛନ୍ତି । ସଙ୍ଗୀତ ସାଧାରଣତଃ ସ୍ୱର-ପ୍ରଧାନ ହୋଇଥାଏ, ଅର୍ଥାତ୍ ଶ୍ରବଣସୁଖଦାୟୀ ସ୍ୱର-ସଂଯୋଜନା ଉପରେ ଗୁରୁତ୍ୱ ଆରୋପ କରିଥାଏ । ଭାବଗର୍ଭକ ହେବା ସଙ୍ଗୀତର ଅତ୍ୟାବଶ୍ୟକ ଲକ୍ଷଣ ନୁହେଁ । ଅନ୍ୟ ପକ୍ଷରେ କବିତା ଭାବଗର୍ଭକ ହେବା ଅତ୍ୟାବଶ୍ୟକ । ଚମ୍ପୂର

ବିଶେଷତ୍ୱ ହେଉଛି—ଏହା ଯେପରି ଭାବଗର୍ଭକ କବିତା, ସେହିପରି ସୁମଧୁର ସ୍ୱର-ସମ୍ବଳିତ ସଙ୍ଗୀତ । * ଉଚ୍ଚକୋଟୀର କାବ୍ୟଗୁଣ ଓ ଉନ୍ନତ ସଙ୍ଗୀତର ସଫଳ ସମନ୍ୱୟରେ କବିସୂର୍ଯ୍ୟ ଏହା ରଚନା କରିଛନ୍ତି । ସେଥିପାଇଁ ପ୍ରାୟ ଦେଢ ଶହ ବର୍ଷ ହେଲା ଆମ ରାଜ୍ୟରେ ଚମ୍ପୂର ଜନପ୍ରିୟତା ଅକ୍ଷୁଣ୍ଣ ଓ ଅପ୍ରତିହତ ରହିଛି । ସ୍ଥଳବିଶେଷରେ କ୍ଲିଷ୍ଟ ଓ ଦୁର୍ବୋଧ ହୋଇ ମଧ୍ୟ, ଏହି ସାଙ୍ଗୀତିକତା ବଳରେ କାବ୍ୟଟି 'ପଥେ, ବିଲେ, ଅନ୍ତଃପୁରେ ଓ ନୃତ୍ୟରଙ୍ଗେ' ବରାବର ଗାନ କରି ହୋଇ ଆସୁଛି ।

କବିସୂର୍ଯ୍ୟ ଚମ୍ପୂର ବିଭିନ୍ନ ସଙ୍ଗୀତରେ ଭାବୋପଯୋଗୀ ରାଗ-ରାଗିଣୀମାନ ସନ୍ନିବେଶିତ କରିଛନ୍ତି । ବିଭିନ୍ନ ପ୍ରକାର ଭାବକୁ ଉପଯୋଗୀ ଭିନ୍ନ ଭିନ୍ନ ରାଗ-ରାଗିଣୀରେ ପରିବେଷଣ କରିବା ପାଇଁ ସଙ୍ଗୀତ-ଶାସ୍ତ୍ରରେ ନିର୍ଦ୍ଦେଶ ରହିଛି । ଜଣେ ନିପୁଣ ଗାୟକ ଓ ସଙ୍ଗୀତଜ୍ଞ ହିସାବରେ କବିସୂର୍ଯ୍ୟ ସେ ବିଷୟରେ ଅବହିତ ଥିଲେ । ସେଥିପାଇଁ ସେ ସାବେରୀ, କେଦାର, ତୋଡ଼ି ପରଜ, କାମୋଦୀ, ପଞ୍ଚମ ବରାଡ଼ି, ମୁଖାରୀ, ଦେଶାକ୍ଷ, କାନଡ଼ାଗୌଡ଼ା, ଝିଂଝୋଟି, ଭାଟିଆରୀ, କାଫି, ପୂରବୀ, ଶଙ୍କରାଭରଣ ପ୍ରଭୃତି ରାଗ ଚମ୍ପୂର ବିଭିନ୍ନ ଗୀତରେ ସଂଯୋଜିତ କରିଛନ୍ତି । 'କବିସୂର୍ଯ୍ୟ ଗ୍ରନ୍ଥାବଳୀ'ରେ ଶ-ଗୀତର କୌଣସି ରାଗ ନିର୍ଦ୍ଦେଶ କରାଯାଇ ନ ଥିବାର ଦେଖାଯାଏ । କିନ୍ତୁ କବିଚନ୍ଦ୍ର କାଳୀଚରଣ ଆପଣା 'ଚମ୍ପୂ ପ୍ରବେଶ' ଗ୍ରନ୍ଥରେ ଏହି ଗୀତର ରାଗ 'ମୁଖାରି' ବୋଲି ନିର୍ଦ୍ଦେଶ କରିଥିଲା ବେଳେ ସଙ୍ଗୀତାଚାର୍ଯ୍ୟ ଦାମୋଦର ହୋତା ନିଜର 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଲହରୀ' ଗ୍ରନ୍ଥରେ 'ଧନାଶ୍ରୀ' ରାଗ ଉଲ୍ଲେଖ କରିଛନ୍ତି । 'ଉତ୍କଳ ସାହିତ୍ୟ ସମାଜ'ର 'ମଧୁସୂଦନ ପାଠାଗାର'ରେ ଥିବା କଟକ ଅରୁଣୋଦୟ ପ୍ରେସ୍-ପ୍ରକାଶିତ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର ୧୯୦୫ ମସୀହା ସଂସ୍କରଣରେ ପୁଣି ଏହି ଶ-ଗୀତର ରାଗ 'କଳ୍ୟାଣଗୌଡ଼ା' ବୋଲି ନିର୍ଦ୍ଦେଶ କରାଯାଇଛି । ଏପରି ମତାନୈକ୍ୟର ସମାଧାନ ଏହି ଆଲୋଚକଦ୍ୱାରା ନୁହେଁ, ତଦ୍‌ବିଦ୍ ବିଦଗ୍ଧ ସଙ୍ଗୀତଜ୍ଞମାନଙ୍କ ଦ୍ୱାରା ସହଜରେ କରାଯାଇ ପାରିବ ।

* କବିସୂର୍ଯ୍ୟ ଗ୍ରନ୍ଥାବଳୀ—ପୃଷ୍ଠା ୫୮

ଚମ୍ପୂର ଚଉପଦୀଗୁଡ଼ିକ ଓଡ଼ିଶୀ ପଦ୍ଧତିର ଶାସ୍ତ୍ରୀୟ ସଙ୍ଗୀତ । ଏଥିରେ କର୍ଣ୍ଣାଟକୀ ପଦ୍ଧତିର ପ୍ରଭାବ ପଡ଼ିଛି ବୋଲି କେତେକଜଣ ଯେଉଁ ମତ ପ୍ରକାଶ କରନ୍ତି, କବିଚନ୍ଦ୍ର କାଳୀଚରଣ ତାହା ଖଣ୍ଡନ କରିଛନ୍ତି । *

ସାଙ୍ଗୀତିକତା ସହିତ ନାଟକୀୟତା ଚମ୍ପୂ ରଚନା ଶୈଳୀର ଏକ ଅନନ୍ୟସାଧାରଣ ବିଶେଷତ୍ୱ । ସମଗ୍ର କାବ୍ୟର ବିଷୟବସ୍ତୁ ଏକ ସଙ୍ଗୀତମୟୀ ନାଟିକା ଢାଞ୍ଚରେ ବିନ୍ୟସ୍ତ କରାଯାଇଛି । କେବଳ ମ ଏବଂ କ୍ଷ-ଗୀତକୁ ବାଦ୍ ଦେଲେ (ଏଥିରେ କବିଙ୍କର ନିଜସ୍ୱ ଉକ୍ତି ପ୍ରକାଶିତ), କାବ୍ୟର ବାକି ବତିଶ ଗୋଟି ଗୀତ ବିଭିନ୍ନ ପାତ୍ର-ପାତ୍ରୀଙ୍କର ସଂଳାପ ହିସାବରେ ସଂଯୋଜିତ ହୋଇଛି । ଲଳିତାର ସଂଳାପ ତେର ଗୋଟି ଗୀତରେ, ଶ୍ରୀକୃଷ୍ଣଙ୍କ ସଂଳାପ ସାତ ଗୋଟି ଗୀତରେ, ରାଧାଙ୍କ ସଂଳାପ ସେହି ସାତ ଗୋଟି ଗୀତରେ, ସଖୀମାନଙ୍କ ସଂଳାପ ଚାରିଗୋଟି ଗୀତରେ ଏବଂ ମଧୁମଙ୍ଗଳର ସଂଳାପ ଗୋଟିଏ ଗୀତରେ ବିନ୍ୟସ୍ତ କରାଯାଇଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ— କବି ଜୟଦେବଙ୍କ 'ଗୀତ ଗୋବିନ୍ଦ'ର କଥାବସ୍ତୁ ଅନୁରୂପ ଶୈଳୀରେ ଯୋଜନାବଦ୍ଧ କରାଯାଇଛି । ଏଥିରେ ଥିବା ଦୁଇ-ତିନିଟି ଗୀତ ବ୍ୟତୀତ ଅନ୍ୟ ସମସ୍ତ ଗୀତ ରାଧା, ସଖୀ ଓ ଶ୍ରୀକୃଷ୍ଣଙ୍କ ସଂଳାପ ଭାବରେ ସନ୍ନିବେଶିତ ହୋଇଛି । କବିସୂର୍ଯ୍ୟ 'ଗୀତଗୋବିନ୍ଦ' ଆଦର୍ଶରେ ସ୍ୱକାବ୍ୟରେ ଏହି ନାଟ୍ୟ-ଧର୍ମ ଗ୍ରହଣ କରିଥିବାର ମନେହୁଏ । ପଣ୍ଡିତ ବିନାୟକ ମିଶ୍ର, କୁଳମଣି ଦାଶ, ଡକ୍ଟର ମାୟାଧର ମାନସିଂହ, କବିଚନ୍ଦ୍ର କାଳୀଚରଣ ପ୍ରମୁଖ ଚମ୍ପୂର ସମସ୍ତ ସମୀକ୍ଷକ ଏହାକୁ ଗୀତନାଟ୍ୟ ବୋଲି ଏକ ସ୍ୱରରେ ସ୍ୱୀକାର କରିଛନ୍ତି । ଏପରିକି ବାବାଜୀ ବୈଷ୍ଣବ ଚରଣ ଦାସ ୧୯୨୮ ମସିହାରେ ଏବଂ କବିଚନ୍ଦ୍ର କାଳୀଚରଣ ୧୯୩୨ ମସିହାରେ କିଶୋରଚନ୍ଦ୍ରାନନ୍ଦ ଚମ୍ପୂର ନାଟ୍ୟ-ରୂପାୟନ କରି ନିଜ ନିଜ ନାଟ୍ୟସଂଘଦ୍ୱାରା ତାହାକୁ ସଫଳତାର ସହିତ ଅଭିନୀତ କରାଇ ପାରିଛନ୍ତି ।

---

* 'ଚମ୍ପୂ ପ୍ରବେଶ' (୧୯୬୧) ଗ୍ରନ୍ଥର ଭୂମିକା ଏବଂ 'କବିସୂର୍ଯ୍ୟ ଗୀତାବଳୀ' (୧୯୬୮) ଗ୍ରନ୍ଥର ମୁଖବନ୍ଧ ଦ୍ରଷ୍ଟବ୍ୟ ।

ଅଷ୍ଟାଦଶ-ଊନବିଂଶ ଶତାବ୍ଦୀରେ 'ଚଉପଦୀ ଚମ୍ପୂ' ଆମ ଲୋକ-ନାଟ୍ୟର ଅନ୍ୟତମ ଶୈଳୀ ସ୍ୱଭାବରେ ପ୍ରଚଳିତ ଥିଲା । * ତାହାର ପ୍ରମାଣ 'ବୃନ୍ଦାବନଚନ୍ଦ୍ର-ବିନୋଦ ଚମ୍ପୂ' ଏବଂ 'ପ୍ରୀତି-ସୁଧାକର' ପ୍ରଭୃତି ରଚନାରୁ ମିଳିଥାଏ । କବିସୂର୍ଯ୍ୟଙ୍କର ପ୍ରାୟ ସମସାମୟିକ କବି ଖଣ୍ଡପଡ଼ାର ମହେନ୍ଦ୍ର ସିଂହସାମନ୍ତ ଯେଉଁ 'ବୃନ୍ଦାବନଚନ୍ଦ୍ର-ବିନୋଦ ଚମ୍ପୂ' (୧୮୯୫ରେ କଟକ ସତ୍ୟ ପ୍ରେସ୍‌ରେ ମୁଦ୍ରିତ) ରଚନା କରିଥିଲେ, ତାହାକୁ 'ପ୍ରାକୃତ ନାଟ୍ୟ ପ୍ରବନ୍ଧ' ନାମରେ ସେ ଚିହ୍ନିତ କରିଥିଲେ । ଏଥିରେ ବିଧିବଦ୍ଧ ଭାବରେ ନାଟକୋଚିତ ନାନ୍ଦୀ, ସୂତ୍ରଧାର ଆଦିର ଅବତାରଣା କରାଯାଇଛି—ସମଗ୍ର କଥାବସ୍ତୁକୁ ତିନିଗୋଟି ଅଙ୍କରେ ବିଭକ୍ତ କରାଯାଇଛି । ସେହିପରି ଶ୍ରୀ ଗୋପାଳ ବଲ୍ଲଭ ଦାସଙ୍କ ଦ୍ୱାରା ସଙ୍କଳିତ 'ପ୍ରୀତି-ସୁଧାକର' (୧୯୦୭ରେ କଟକ ଏଡ଼ଓ୍ୱାର୍ଡ଼ ପ୍ରେସରେ ମୁଦ୍ରିତ) "ଶ୍ରୀରାଧାକୃଷ୍ଣଙ୍କ ପ୍ରୀତିକୌତୁକ ସମ୍ବନ୍ଧୀୟ ଭିନ୍ନ ଭିନ୍ନ କବିଙ୍କ ଚଉପଦୀ ଚମ୍ପୂ ବା ଗୀତି-ନାଟକ" ନାମରେ ଅଭିହିତ ହୋଇଥିଲା । ଏହା ଛଅଟି ଅଙ୍କରେ ବିଭକ୍ତ ଏବଂ ପ୍ରତ୍ୟେକ ଅଙ୍କ ପାଞ୍ଚଟି କରି ଦୃଶ୍ୟରେ ପର୍ଯ୍ୟବସିତ । ଗ୍ରନ୍ଥର ଉପକ୍ରମଣିକାରେ ଗୋପାଳବଲ୍ଲଭ ପ୍ରକାଶ କରିଛନ୍ତି—"କବିସୂର୍ଯ୍ୟ ବ୍ରହ୍ମାଙ୍କ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ ଧାଡ଼ିରେ ଲିଖିତ; ତାଙ୍କର ଅନ୍ୟ ଗୀତ ଓ ବନମାଳୀ, ରାମକୃଷ୍ଣ, ରାମଚନ୍ଦ୍ର, ଗୋପାଳକୃଷ୍ଣ ପ୍ରଭୃତିଙ୍କ ଚୌପଦୀ ତଦ୍ରୂପ ଚମ୍ପୂ ବା ଗୀତି-ନାଟକମାନଙ୍କର ଅଂଶ ବୋଲି ସ୍ପଷ୍ଟ ଜଣାଯାଏ । ବନମାଳୀଙ୍କର 'କବନାଚରେ କହ୍ନା ମୁରଲି ବଜାଏ' ଘୋଷାର ଚୌପଦୀଟି ନିଃସନ୍ଦେହରେ ତାଙ୍କର 'ସଖି ନିକୁଞ୍ଜ ବନେ ବଂଶୀ କେ ବଜାଏ' ଘୋଷା ଗୀତର ଉତ୍ତର । ସେହିପରି 'କୁଞ୍ଜେ ମୁରଲି ବାଜୁଛି' ଘୋଷାର ଗୀତ ଯେଉଁ ପ୍ରବୃତ୍ତି ପ୍ରକାଶ କରୁଛି, ତାହାର ନିବୃତ୍ତି ପାଇଁ 'ଯମୁନା ଯିବା ନୋହିଲା' ଘୋଷାର ଗୀତ ରଚିତ ହୋଇ ସ୍ପଷ୍ଟ ଜଣାଯାଏ । × × ଏହି ହେତୁରୁ ଚୌପଦୀ ସବୁର ଚମ୍ପୂ-ଧାଡ଼ିରେ ସଙ୍କଳନ ଆବଶ୍ୟକ ।"

ଚମ୍ପୂର କଥାବସ୍ତୁରେ ଘଟଣା-ପରମ୍ପରାକ୍ରମେ ଯେପରି ଉତ୍‌ଥାନ-ପତନମୟ ଗତି ପ୍ରକଟିତ ହୋଇଛି, ଯେପରି ପାତ୍ରପାତ୍ରୀଙ୍କର ଆଶା-ନିରାଶା ଓ ଅନ୍ତର୍ଦ୍ୱନ୍ଦର ଉତ୍କଣ୍ଠାତ୍ମକ ପରିପ୍ରକାଶ ଘଟିଛି, ତହିଁରୁ କାବ୍ୟଟିର ନାଟ୍ୟ-ରୂପ

* କେତୋଟି ସାହିତ୍ୟିକ ଅଭିଭାଷଣ—ଡକ୍ଟର କୃଷ୍ଣ ଚରଣ ବେହେରା, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ (ପରିବର୍ଦ୍ଧିତ ୨ୟ ସଂସ୍କରଣ—୧୯୭୭)—ପୃଷ୍ଠା ୧୯୫

ବା-ନାଟ୍ୟୋପଯୋଗିତା ସୁସ୍ପଷ୍ଟ ଜଣା ପଡ଼ିଥାଏ । କବିସୂର୍ଯ୍ୟଙ୍କ ରଚନା-ଶୈଳୀର ଏହି ଚମତ୍କାର ନାଟକୀୟତା ପରବର୍ତ୍ତୀ ବିଭିନ୍ନ ଚମ୍ପୂ-ରଚୟିତା-ମାନଙ୍କୁ ଅନୁପ୍ରାଣିତ କରିଥିବାର ଜଣାଯାଏ ।

### ଭାଷା-ବିନ୍ୟାସ

ଭାଷା-ବିନ୍ୟାସରେ କବିସୂର୍ଯ୍ୟ ଜଣେ ଯାଦୁକର—କହିଲେ ଚଳେ । ତାଙ୍କର ରଚନାବଳୀରେ ଆମର ମାତୃଭାଷା ରୀତିକାବ୍ୟର ଉପଯୋଗୀ ଏକ ସ୍ୱତନ୍ତ୍ର ଐଶ୍ୱର୍ଯ୍ୟ ଆହରଣ କରିଛି । ଚମ୍ପୂର ଛନ୍ଦେ ଛନ୍ଦେ ତାହାର ପ୍ରମାଣ ବିଦ୍ୟମାନ । କ୍ଷମଣିମଣ୍ଡଳ, ଗତାଳସନାଟପଟ୍ଟ, ଘସ୍ରନାଥନନ୍ଦନା, ଆଜ୍ଞାଳଶତ୍ରୁପିତନେତା, ଛ-ଦୁଇ ଦୁର୍ଗେଶ, ଜମ୍ବାରିତମଣି, ଝଷଧ୍ୱଜପୀଡ଼ା, ଉବାତନାବ, ନର୍ଦ୍ଧୂମଶିଖ ଧନଞ୍ଜୟ, ପୃଥ୍ୱୀଚନ୍ଦବାଳ ପରିବୃତ, ବିଶ୍ୱମ୍ଭରିରଜ ଖେଳ, ଭୂତଭୂଷବପକ୍ଷ ପ୍ରକ୍ଷେପ୍ତନ, ମୃଡ଼ନୟନ ସଂଖ୍ୟକ, ବିରୂପାକ୍ଷ ଦେବ ବିପକ୍ଷ, ଶମନସ୍ୱସା ତଟ, ଷଟପଦମାଳକେଶା, ନମୁଚିସୂଦନ, ଶ୍ରୁତିଶିର-ଅବତଂସାକୃତି, ତରିବର, ଜଳାକର— ଭବନବଳାମୁଖ, ବୃଜିନଦଳା ପ୍ରଭୃତି ବହୁ ପଦବିନ୍ୟାସରୁ ଚମ୍ପୂର ଶାବ୍ଦିକତା ବା ଶବ୍ଦାଡ଼ମ୍ବର ପ୍ରମାଣିତ ହୁଏ । ଅବଶ୍ୟ ଭଞ୍ଜ-କାବ୍ୟ ସଦୃଶ ଶବ୍ଦାଡ଼ମ୍ବର ଚମ୍ପୂରେ ନାହିଁ, ତଥାପି ଯୁଗ-ପ୍ରଭାବରୁ କବିସୂର୍ଯ୍ୟ ଶାବ୍ଦିକତାର ମୋହ ସମ୍ପୂର୍ଣ୍ଣ ତ୍ୟାଗ କରି ପାରି ନାହାନ୍ତି । ପୁଣି ଏହାରି ପାଖେ ପାଖେ ସରଳ ଶବ୍ଦ ବା ଲୋକ-ପ୍ରଚଳିତ ଭାଷାର ସଫଳ ସମନ୍ୱିତ ବ୍ୟବହାର ତାଙ୍କର କଳାକୁଶଳତାର ପରିଚୟ ଦିଏ । ଭାବୋପଯୋଗୀ ଭାଷା-ବିନ୍ୟାସରେ ନିତ୍ୟ ବ୍ୟବହୃତ ଓଡ଼ିଆ ଶବ୍ଦ ସହିତ ସଂସ୍କୃତ ବା ସଂସ୍କୃତାନୁଗ ଶବ୍ଦର ସୁନ୍ଦର ସୁସମାହିତ ଯୋଜନା ଚମ୍ପୂର ବିଭିନ୍ନ ସ୍ଥାନରେ ବିଦ୍ୟମାନ; ଯଥା—

କଲବଲ ଛଟପଟ ହୋଇ ଯାଉଛି ନିପଟ
ସଂବେଗ-ଅଶନ ବିରହିରେ । (କ)
ଘସ୍ରନାଥନନ୍ଦନା ଅନାଉଣିକ ମନା କରୁ ଯେ ଥାଉଁ
ହଟି ଗୃହିଁଲୁ ରେ । (ଘ)
ଘୃର ହରିତରେ ଘେରି ଚରିଉଥାନ୍ତି ବାଛୁରି
ଚୂଳମୁକୁଟିଆ ସଖାମାନେ । (ଚ)
ଟାଣଖୁଣ୍ଟା ଗୁରୁଜନ ଗଞ୍ଜନାରୁ ମୋ ପ୍ରାଣସଖୀ ସରିବ ହେ । (ଟ)

ଯଷ୍ଠାଦ୍ରସମାଧିଖଣ୍ଡନା ଭୁ ନଧି ମୁଁ ରଙ୍କମାନଙ୍କ ବର ରେ । (ଯ)
ଲଗିଛୁ ଲକ୍ଷା ମୁକୁଟ ଶିଖରେ
ଲଜ କଥା ଲୋକେ ଦେଖିଲେ ଦାଣ୍ଡେ । (ଲ)

ପ୍ରକୃତରେ, "ସରଳ ଅଥଚ ବିଶିଷ୍ଟାର୍ଥକ (idiomatic) ଓଡ଼ିଆ ଶବ୍ଦମାନଙ୍କୁ ସଂସ୍କୃତ ଶବ୍ଦମାନଙ୍କ ସଙ୍ଗେ ବ୍ୟବହାର କରି ସେ (କବିସୂର୍ଯ୍ୟ) ଭଞ୍ଜୀୟ ଯୁଗ ପରେ ଭାଷାକୁ ଯେଉଁ ନୂତନ ଛାଞ୍ଚରେ ଢାଳି ଦେଇଗଲେ, ଉତ୍କଳୀୟ କବିବର ରାଧାନାଥ ତାହାକୁ ହିଁ ଅନୁକରଣ କରିଅଛନ୍ତି ।" * ପଣ୍ଡିତ କୁଳମଣି ଦାଶଙ୍କର ଏ ଉକ୍ତି ଯଥାର୍ଥ ବୋଲି ମନେହୁଏ । ଆମର ବିପୁଳ ଶବ୍ଦଭଣ୍ଡାର କବିସୂର୍ଯ୍ୟଙ୍କର ସମ୍ପୂର୍ଣ୍ଣ ନିୟନ୍ତ୍ରଣାଧୀନ ଥିଲା, ଅଥବା କବିସମ୍ରାଟ ଭଞ୍ଜଙ୍କ ଭଳି କହିଲେ—କବିସୂର୍ଯ୍ୟ 'ଶବଦ-ସମୁଦ୍ର ପାରି' ହୋଇଥିଲେ । ତେଣୁ ଚମ୍ପୂ କାବ୍ୟରେ ସେ କର୍ଣ୍ଣ-ମନ-ରସାୟନ ଭାବୋପଯୋଗୀ ଭାଷାବିନ୍ୟାସରେ କୃତିତ୍ୱ ପ୍ରଦର୍ଶନ କରିଛନ୍ତି ।

ଯାବନିକ ଶବ୍ଦ-ସମାବେଶ ଚମ୍ପୂର ଭାଷା-ବିନ୍ୟାସରେ ବିଚିତ୍ର ବର୍ଣ୍ଣବିଭା ସୃଷ୍ଟି କରିଛି । କବିସୂର୍ଯ୍ୟଙ୍କ ସମୟରେ—ମରହଟ୍ଟା ଅମଳରେ ଏବଂ ଇଂରେଜ ଶାସନର ପ୍ରାରମ୍ଭ କାଳରେ ଫାରସୀ, ଆରବୀ ପ୍ରଭୃତି ଥିଲା ସରକାରୀ ତଥା ସମ୍ଭ୍ରାନ୍ତ ଶ୍ରେଣୀର ଭାଷା । ଜନସାଧାରଣ ମଧ୍ୟ ଫାରସୀ, ଆରବୀ ଇତ୍ୟାଦି ଯାବନିକ ଭାଷା ସହିତ ସମ୍ପୂର୍ଣ୍ଣ ଅପରିଚିତ ନ ଥିଲେ । ଜାତୀୟ ସାହିତ୍ୟ-ଗୀତରେ ତେଣୁ ଏହି ଯାବନିକ ଭାଷାର ମୁଦ୍ରାଙ୍କ ପ୍ରକଟିତ ହେବା ଅତ୍ୟନ୍ତ ସ୍ୱାଭାବିକ । ବୋଲିବା ବାହୁଲ୍ୟ ଯେ—ଏହାଦ୍ୱାରା ଆମର ଭାଷା ଓ ସାହିତ୍ୟ ଋଦ୍ଧିମନ୍ତ ହୋଇଛି । ଖିଆଲ (ଆରବୀ), ଦରଦ (ଫାରସୀ), ହୁକୁମ (ଆ), ଜହର (ଫା), ନଜର (ଆ), ଫିରମାସ (ଫା), ଆବୁର (ଫା), ତାଜ (ଫା), ଫଉରଟଖୋର (ଆ), ଆଖର (ଆ), ଫରିଆଦ (ଫା), ଫଉଜ (ଆ), ଫଜିତ (ଆ), ସରଦାର (ଫା) ପ୍ରଭୃତି ଯାବନିକ ଶବ୍ଦର ସଫଳ ଓ ସୁନ୍ଦର ପ୍ରୟୋଗ ଚମ୍ପୂ କାବ୍ୟରେ କରାଯାଇଛି ।

ସାଙ୍ଗୀତିକ ରଚନା ହେତୁ ଚମ୍ପୂର ଭାଷା ବିନ୍ୟାସରେ କେତେକ ବିଶେଷତ୍ୱ ରହିଛି । ସଙ୍ଗୀତ ଓ ସାଧାରଣ କବିତାର ଭାଷା-ସମାବେଶରେ

* କବିସୂର୍ଯ୍ୟ ଗ୍ରନ୍ଥାବଳୀ—ପୃଷ୍ଠା ୬୯-୭୦

ତାରତମ୍ୟ ରହିବା ସ୍ୱାଭାବିକ । ଉଚ୍ଚକୋଟୀର କବିତା ହେଲେହେଁ, ଚମ୍ପୂର ଚଉପଦୀଗୁଡ଼ିକ ମୁଖ୍ୟତଃ ସଙ୍ଗୀତାକାରରେ ଗାଆ ପାଇଁ ଉଦ୍ଦିଷ୍ଟ । ସେଥିପାଇଁ ଏହାର ଭାଷା ସାଧାରଣତଃ ସହଜ-ଉଚ୍ଚାରଣଯୋଗ୍ୟ ଏବଂ ଶ୍ରବଣ-ସୁଖଦାୟୀ ହୋଇଛି । ଏ ସମ୍ପର୍କରେ କବିଚନ୍ଦ୍ର କାଳୀଚରଣଙ୍କ ଅଭିମତ ଏଠାରେ ଉଲ୍ଲେଖଯୋଗ୍ୟ—"କବିତା ଓ ସଙ୍ଗୀତ ରଚନାରେ ଭାଷା ଖଞ୍ଜିବାର ଟିକିଏ ପାର୍ଥକ୍ୟ ଅଛି । ସ୍ୱରରେ ଉଚ୍ଚାରଣ ପାଇଁ ଝର ପାଣି ଭଳି ସରସ ଶବ୍ଦ-ସମ୍ଭାର ଲୋଡ଼ା । କଟମଟିଆ ବା କଷ୍ଟରେ ଉଚ୍ଚାରିତ ହେବା ଭଳି ଶବ୍ଦ ସଙ୍ଗୀତର ଯେପରି ଦେହସୁହା ହୁଏ ନାହିଁ ! ସମାସାନ୍ତ ଦୀର୍ଘ ପଦଯୋଜନା କବିସୂର୍ଯ୍ୟଙ୍କ ଲେଖାରେ ଯେ ନାହିଁ, ଏ କଥା ମୁଁ କହୁ ନାହିଁ; ହେଲେ ଏଭଳି ଶୃଙ୍ଖଳାରେ ସେଭଳି ଶବ୍ଦମାନଙ୍କର ବସତି ହୋଇଛି ଯେ, ଗଦ୍ୟଗନ୍ଧରେ ପାଠ କଲେ ଟିକିଏ ଅଖଞ୍ଜିଆ ଲାଗିଲେ ମଧ୍ୟ ସ୍ୱର ପକାଇ ଗାଇବା ବେଳକୁ ତାହା କାନ-ମଧୁରିଆ ହୋଇ ପଡ଼େ । ଏହି ବିଶେଷତ୍ୱ ଠିକ୍ ସଙ୍ଗୀତ ଜ୍ଞାନ-ଥିବା ଗୀତକବିଙ୍କ ପାଖରୁ ମିଳେ । କେହି ଟିକିଏ ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ଲକ୍ଷ୍ୟ କରି ପାରିବେ ଯେ—ଗୀତଛନ୍ଦରେ ସରସ, ସୁନ୍ଦର, ମଧୁର ଶବ୍ଦ-ଗୁମ୍ଫନ ଅସଙ୍ଗୀତଜ୍ଞ ପକ୍ଷେ ସୁଲଭ ନୁହେଁ । କବିସୂର୍ଯ୍ୟ ଅକ୍ଷର ଗଣି ପଦଯୋଖା କବି ନୁହନ୍ତି । ସେ ରସିକ, ଚତୁର, ପଣ୍ଡିତ ଏବଂ ତାଙ୍କର ସଙ୍ଗୀତ-ଜ୍ଞାନ ଥିବା ସୁନିଶ୍ଚିତ ।" * ଚମ୍ପୂର ବିଭିନ୍ନ ଗୀତରୁ—ବିଶେଷତଃ ଭ, ମ ଏବଂ ନ-ଗୀତରୁ ଏ କଥାର ପ୍ରମାଣ ମିଳିବ ।

## ଉପସଂହାର

ପରିଶେଷରେ ବୋଲିଯାଇ ପାରେ ଯେ—କବିସୂର୍ଯ୍ୟ ବଳଦେବ 'ନବନବୋନ୍ମେଷଶାଳିନୀ ପ୍ରଜ୍ଞା' ବା ପ୍ରତିଭା ଘେନି ଆମ ସାହିତ୍ୟର ଏକ ଅବକ୍ଷୟୀ କାଳରେ ଆବିର୍ଭୂତ ହୋଇଥିଲେ । କଳା ଓ ସାହିତ୍ୟ କ୍ଷେତ୍ରରେ ଅହେତୁକ ସ୍ଫୀତି, ବାହୁଲ୍ୟ, ପ୍ରମତ୍ତତା ଏବଂ ଉଚ୍ଛ୍ୱସିତ ଭାବ ହିଁ ଅବକ୍ଷୟ ତଥା ଅଧୋଗତିର ପ୍ରତୀକ । କିନ୍ତୁ ମିତାଚାର, ସଂଯମ, ଅପ୍ରମତ୍ତତା ଏବଂ ପରିମିତ ଭାବ ପ୍ରଗତିର ପରିଚାୟକ । ସାଂସ୍କୃତିକ ଇତିହାସରେ ଏହା

* ଚଂପୂ ପ୍ରବେଶ—ଇଉନାଇଟେଡ଼୍ ବୁକ୍ ହାଉସ୍, କଟକ (୧୯୬୧)—ପୃଷ୍ଠା ୮

ସଚରାଚର ପରିଲକ୍ଷିତ ହୋଇଥାଏ । ସଂସ୍କୃତ ସାହିତ୍ୟରେ କାଳିଦାସ-ଯୁଗ ପରେ ଭାରବି, ମାଘ, ଭର୍ତ୍ତୃହରି (ଭଟ୍ଟି) ବାଣଭଟ୍ଟ, ଶ୍ରୀହର୍ଷ ପ୍ରମୁଖ କବିଗଣ ଯେଉଁ କାବ୍ୟସୃଷ୍ଟି କରିଥିଲେ, ତହିଁରେ ସାଧାରଣତଃ ଉକ୍ତ ଅବକ୍ଷୟୀ ଲକ୍ଷଣ ପ୍ରକଟିତ ହୋଇଥିଲା । ଦୁର୍ଭାଗ୍ୟର ବିଷୟ—ମୁଖ୍ୟତଃ ଏହି ସଂସ୍କୃତ କବିମାନଙ୍କ ଆଦର୍ଶରେ ସାହିତ୍ୟ ସୃଷ୍ଟି କରିଥିବାରୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏବଂ ତାଙ୍କର ଅନୁକାରୀମାନଙ୍କ ରଚନାରେ ଉକ୍ତ ଅବକ୍ଷୟୀ ଲକ୍ଷଣମାନ ପ୍ରକାଶିତ ହୋଇ ପଡ଼ିଲା । କବିସୂର୍ଯ୍ୟଙ୍କ ସାରସ୍ୱତ ସୃଷ୍ଟି ଏହାର ବିପକ୍ଷରେ ଏକ ବଳିଷ୍ଠ ପ୍ରତିବାଦ କହିଲେ ଚଳେ । କାବ୍ୟକବିତାର ଆତ୍ମିକ ତଥା ଆଙ୍ଗିକ କ୍ଷେତ୍ରରେ କବିସୂର୍ଯ୍ୟ— ଭଞ୍ଜଙ୍କ ଦ୍ୱାରା ପ୍ରଭାବିତ ହୋଇ ମଧ୍ୟ—ବାହୁଲ୍ୟ ଓ ପ୍ରମତ୍ତତା ଯଥାସମ୍ଭବ ପରିହାର କରିଛନ୍ତି । ଜଣେ ପ୍ରକୃତ ଶିଳ୍ପୀ ଭାବରେ ସେ ସକଳ ପ୍ରକାର ସୀମା-ଲଙ୍ଘନ ଓ ଆତ୍ୟନ୍ତିକତାର ବିରୋଧୀ ଥିବାର ମନେହୁଏ । ଅଷ୍ଟାଦଶ ଶତାବ୍ଦୀ ଶେଷ ଭାଗରେ ଓଡ଼ିଆ ସାହିତ୍ୟର ସେହି ଅବକ୍ଷୟୀ କାଳରେ ତାଙ୍କର 'ନବୀନା ପ୍ରତିଭା ଲକ୍ଷ୍ମୀରୂପେ' ସୁଧା-କଳସ ହାତରେ ଧରି ଆବିର୍ଭୂତ ହୋଇଥିଲା ଏବଂ ଆମ ମଧ୍ୟରେ ରସାମୃତ ପରିବେଷଣ ପୂର୍ବକ ସାଧ୍ୟମତେ କାବ୍ୟସାହିତ୍ୟର ଆବିଳତା ଦୂରୀକରଣ ପାଇଁ ସକ୍ରିୟ ହୋଇଥିଲା । ଔଚିତ୍ୟ ଏବଂ ଦେଶକାଳପାତ୍ରାନୁଗ ସ୍ୱାଭାବିକତାର ସୀମା ମଧ୍ୟରେ ସେ ପୂର୍ବୋକ୍ତ ଦୃଷ୍ଟିର ସହିତ ଲେଖନୀ ଚାଳନା କରିଥିଲେ । ସେଥିପାଇଁ ପରବର୍ତ୍ତୀ ଯୁଗ-ସାହିତ୍ୟ ତାଙ୍କ ଦ୍ୱାରା ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ହୋଇଥିଲା । ଭଞ୍ଜ ଓ ରାଧାନାଥଙ୍କ ମଧ୍ୟରେ କବିସୂର୍ଯ୍ୟ ପ୍ରକୃତରେ ଏକ ଦୀପ୍ତିମାନ୍ ସୂର୍ଯ୍ୟ, ଯେ ଆମ ସାହିତ୍ୟ-ସୌର ଜଗତର ଉକ୍ତ ପ୍ରଜ୍ୱଳିତ ଗ୍ରହଯୁଗଳ ସହିତ ଆଦାନ-ପ୍ରଦାନମୂଳକ ବଳିଷ୍ଠ ସମ୍ପର୍କ ରକ୍ଷା କରି ପାରିଛନ୍ତି ।

—*—

## ପରିଶିଷ୍ଟ—(କ)

### କେତୋଟି ମୂଲ୍ୟବାନ୍ ମନ୍ତବ୍ୟ

× × × କବିସମ୍ରାଟ୍‌ଙ୍କ ଗୀତାମୃତ
ଦୂରୁଁ ବହିଆଣେ ଚିଲିକା-ମାରୁତ ।
× × × ×
ଘିବାନ୍ତର ପୁଣି କ୍ଷଣେ କରେ ଜାତ
'ଗଲଣି ତ ଗଲା କଥା ରେ ସଙ୍ଗାତ ।'
ସଙ୍ଗୀତ ଆବେଶେ ନାନାରୂପେ ମନ
ଅଜ୍ଞାତସ୍ତୃ ଦେଶେ କରେ ବିଚରଣ ।
ଭୁଲିଯାଏ ଶୂନ୍ୟେ ଶୂନ୍ୟେ କେଉଁ ସ୍ଥାନେ
କି ଲୋଡ଼ିବା ଆଶେ ସେହି ତା' ନ ଜାଣେ ।
ଧନ୍ୟ ସେହି ଯାର ଆଜ୍ଞା ଶିରେ ଧରି
ଏ ଲୀଳା ରଚନ୍ତି ଦେବୀ ବାଗୀଶ୍ୱରୀ ।
ଧନ୍ୟ ରଥି ! ତୁମ୍ଭ ଜନ୍ମ ଶୁଭ କ୍ଷଣେ
ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳ-ଭୁବନେ ।
ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।
—କବିବର ରାଧାନାଥ ରାୟ (ଚିଲିକା—୧୮୯୨)

ଯାହାଙ୍କ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' କାବ୍ୟ
ପରିଶୁଦ୍ଧ ସୁନିର୍ମଳ ମଧୁର ସୁଶ୍ରାବ୍ୟ,
ଯାହା ରସ ପାନ କରି ଗାୟକ ପଣ୍ଡିତ
ଅନୁକ୍ଷଣ ସୁଖସରେ ମାତି ଆନନ୍ଦିତ,
× × ×

ସେହି କବିସୂର୍ଯ୍ୟ ନାମ ଅମର ଅକ୍ଷରେ
ଲିଖିତ ହୋଇଛି ଓଡ଼ିଆ ଯେ ଇତିହାସରେ ।

—ଶ୍ରୀ ଅପର୍ଣ୍ଣା ପଣ୍ଡା (କବିଜୀବନୀ—୧୯୧୭)

କବିସୂର୍ଯ୍ୟଙ୍କର ପ୍ରତିଭା ଆମ୍ଭମାନଙ୍କର ଏକାନ୍ତ ନମସ୍ୟ । ଏହି ଚମ୍ପୂ କାବ୍ୟଟି କେବଳ କବିଙ୍କୁ ଅମର କରିଅଛି ବୋଲି କହିଲେ ଚଳେ ।

—ପଣ୍ଡିତ ବିନାୟକ ମିଶ୍ର (ଓଡ଼ିଆ ସାହିତ୍ୟର ଇତିହାସ—୧୯୨୮)

ଭଞ୍ଜକବିଙ୍କର ଗ୍ରନ୍ଥ ଯୁଗ ପରେ ସଙ୍ଗୀତ ଯୁଗରେ ଗୋପାଳକୃଷ୍ଣ, ବନମାଳୀ ଆଦି ଆବିର୍ଭୂତ ହୋଇ ଓଡ଼ିଶୀ ସଙ୍ଗୀତମାନ ରଚନା କରିଥିଲେ । କବିସୂର୍ଯ୍ୟ ସେହି ନକ୍ଷତ୍ରମାଳା ମଧ୍ୟରେ ସୁଧାକର ବୋଲି ମୋର ଧାରଣା ।

—ଗୋପାଳଚନ୍ଦ୍ର ପ୍ରହରାଜ (କବିସୂର୍ଯ୍ୟ ଗ୍ରନ୍ଥାବଳୀ—ମୁଖବନ୍ଧ—୧୯୨୮)

କବିସୂର୍ଯ୍ୟ ଭଞ୍ଜୀୟ ଯୁଗର କବି ଏବଂ ଭଞ୍ଜଙ୍କ କବିତାର ଛାୟା ତାଙ୍କ ରଚନାରେ ସର୍ବତ୍ର ପ୍ରତିଫଳିତ । ସ୍ୱକୀୟ ଅସାଧାରଣ ପ୍ରତିଭା ବଳରେ ସେ ଭଞ୍ଜୀୟ କବିତାରେ ଯେଉଁ ଦୋଷ ଦେଖି ପାରିଥିଲେ, ନିଜ ରଚନାବଳୀରେ ସେ ସବୁକୁ ଯଥାଶକ୍ତି ପରିହାର କରିଅଛନ୍ତି ।

—ପଣ୍ଡିତ କୁଳମଣି ଦାଶ (କବିସୂର୍ଯ୍ୟ ଗ୍ରନ୍ଥାବଳୀ—ଜୀବନବୃତ୍ତାନ୍ତ—୧୯୨୮)

ବଳଦେବଙ୍କ ଚମ୍ପୂ ସ୍ୱର ତଥା ଭାବ ମାଧୁରୀ ହେତୁ ଉତ୍କଳରେ ସର୍ବତ୍ର ଆଦୃତ ।

—ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି (ଜୀବନ ଚମ୍ପୂ ମୁଖବନ୍ଧ—୧୯୪୭)

ଚମ୍ପୂ ଓଡ଼ିଆ ସାହିତ୍ୟ-ଭଣ୍ଡାରର ଗୋଟିଏ ଅମୂଲ୍ୟ ରତ୍ନ । ତାକୁ ନେଇ ଗର୍ବ କରିବା ସମୀଚୀନ ଓ ସ୍ୱାଭାବିକ । କବିସୂର୍ଯ୍ୟଙ୍କର ଚମ୍ପୂ ଉତ୍କଳର ପୁରପଲ୍ଲୀରେ ସୁପରିଚିତ । ତା'ର ରାଗ ରାଗିଣୀରେ ଜାତିଟି ମୁଗ୍ଧ ।'

—ଶ୍ରୀ ଲଳିମୋହନ ପଟ୍ଟନାୟକ ('ଜୀବନ-ଚମ୍ପୂ'—୧୯୪୭)

'କବିସୂର୍ଯ୍ୟ' ରସାନୁକୂଳ ଛନ୍ଦ-ରାଗ-କଳ୍ପନା, ରାଗାନୁସାରୀ ସାହିତ୍ୟ ସର୍ଜନା ଏବଂ ସଙ୍ଗୀତର ସମୁପଯୁକ୍ତ ଲଳିତ ପଦ ସଂଯୋଜନାରେ ଧୁରନ୍ଧର ବୋଲି ସ୍ୱୀକାର କରିବାକୁ ହେବ । ତାଙ୍କର ସଙ୍ଗୀତ ତଥା ସାହିତ୍ୟ-ସୃଷ୍ଟି ଓଡ଼ିଶାର ଏକ ମାନମନ୍ଦିର ।

—କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ (କବିସୂର୍ଯ୍ୟ ଗୀତାବଳୀ—୧୯୬୮)

କବିସୂର୍ଯ୍ୟଙ୍କ ଶ୍ରେଷ୍ଠ କୃତି ମାତ୍ର ଖଣ୍ଡିଏ କ୍ଷୀଣାବୟବ ଗ୍ରନ୍ଥ, ଚଉତିଶା-ଛାନ୍ଦରେ ଲିଖିତ ୩୪ଟି ଗୀତର ସମାହାର। × × × ଆକାରରେ ଛୋଟ ହେଉ ପଛକେ ସମଗ୍ର କାବ୍ୟଟି ସୁଯୋଜିତ, ସୁଗଠିତ ଓ ସୁଶୋଭିତ; ଜଣାପଡ଼ୁଛି ଏକ ଅବିଚ୍ଛିନ୍ନ କାବ୍ୟିକ ପ୍ରେରଣାରେ ହିଁ ଲିଖିତ—ଯାହା ବିନା ଶିଳ୍ପ ଓ ସାହିତ୍ୟ-ସଂସାରରେ କୌଣସି ହେଲେ ସ୍ଥାୟୀ ଓ ମହତ୍ ସିଦ୍ଧି ଅସମ୍ଭବ। ସମଗ୍ର ଓଡ଼ିଆ ସାହିତ୍ୟରେ ଏପରି ଏକ ସାନ୍ଦ୍ର-ନିବିଡ଼ ସୁନିର୍ମିତ ଦୀର୍ଘାୟୁ କାବ୍ୟ ଆଉ ନାହିଁ ବୋଧହୁଏ।

—ଡକ୍ଟର ମାୟାଧର ମାନସିଂହ (ଓଡ଼ିଆ ସାହିତ୍ୟର ଇତିହାସ—୧୯୬୭)

—*—

# ପରିଶିଷ୍ଟ—(ଖ)

## ଗ୍ରନ୍ଥ-ପଞ୍ଜିକା

୧ । କବିସୂର୍ଯ୍ୟ ଗ୍ରନ୍ଥାବଳୀ— ସଂ: ଶ୍ରୀ କୁଳମଣି ଦାଶ, କଟକ ପବ୍ଲିସିଂ ହାଉସ୍ (୧୯୫୬)

୨ । ଚଂପୂ ପ୍ରବେଶ—ସଂ: କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଇଉନାଇଟେଡ୍ ବୁକ୍ ହାଉସ୍, କଟକ (୧୯୬୧)

୩ । କବିରତ୍ନ-ଗୀତ-ଗଙ୍ଗାମୃତ—ସଂ: ପଣ୍ଡିତ ଭୁବନେଶ୍ୱର ମିଶ୍ର କବିବଲ୍ଲଭ, ଧରାକୋଟ, ଗଞ୍ଜାମ (୧୯୬୧)

୪ । ଚଂପୂ ସ୍ୱରଲିପି—ସର୍ବଶ୍ରୀ ଅନନ୍ତଚରଣ ପାଣି, କାଳୀଚରଣ ପଟ୍ଟନାୟକ, ତାରିଣୀଚରଣ ପାଣି, ବାଳକୃଷ୍ଣ ଦାସ, ଭୁବନେଶ୍ୱର ମିଶ୍ର, ଶ୍ୟାମସୁନ୍ଦର ଧୀର ଓ ଶ୍ୟାମସୁନ୍ଦର ସିଂହାରଙ୍କ ଦ୍ୱାରା ସ୍ୱରଲିପି ପ୍ରସ୍ତୁତ କରାଯାଇଛି । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, ଭୁବନେଶ୍ୱର (୧୯୬୩)

୫ । କବିସୂର୍ଯ୍ୟ-କବିତା-ଗୀତା—ପ୍ରତିଭା ପ୍ରକାଶ ଭବନ, ବ୍ରହ୍ମପୁର, ଗଞ୍ଜାମ (୧୯୬୪-୬୫)

୬ । କବିସୂର୍ଯ୍ୟ ଗୀତାବଳୀ—ସଂ: କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଜଗନ୍ନାଥ ରଥ, କଟକ (୧୯୬୮)

୭ । କିଶୋରଚନ୍ଦ୍ରାନନ୍ଦ ଚଂପୂ-ଲହରୀ (ସ୍ୱରଲିପି)—ସଙ୍ଗୀତାଗୁର୍ଯ୍ୟ-ଦାମୋଦର ହୋତା, ଓଡ଼ିଶୀ ବିକାଶ ପ୍ରତିଷ୍ଠାନ, ପୁରୀ (୧୯୭୦)

୮ । ହାସ୍ୟକଲ୍ଲୋଳ—ସଂ: ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ସରସ ସାହିତ୍ୟ ସମିତି, କଟକ (୧୯୭୫)

୯ । ଖୁରୁଧା ଇତିହାସ—ଶ୍ରୀକେଦାରନାଥମହାପାତ୍ର, ଭୁବନେଶ୍ୱର (୧୯୬୯)

ଓଡ଼ିଆ ସମାଜ ଓ ସାହିତ୍ୟ—ଡକ୍ଟର ମାୟାଧର ମାନସିଂହ, ଭାରତୀ ବିହାର, କଟକ (୧୯୫୬)

୧୧ । ଓଡ଼ିଆ ସାହିତ୍ୟର ମଧ୍ୟପର୍ବ—ଶ୍ରୀ ସୁରେନ୍ଦ୍ର ମହାନ୍ତି, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର (୧୯୬୭)

୧୨ । ଗ୍ରୀଷ୍ମ ସୁଧାକର—ଶ୍ରୀ ଗୋପାଳବଲ୍ଲଭ ଦାସ, କଟକ ଏଡ୍‌ଓ୍ୱାର୍ଡ୍ ପ୍ରେସ୍ (୧୯୦୬)

୧୩ । ସଂସ୍କୃତ ସାହିତ୍ୟର ଇତିହାସ—ଡକ୍ଟର ଶ୍ରୀମତୀ ସାବିତ୍ରୀ ରାଉତ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର (୧୯୭୧)

୧୪ । ଓଡ଼ିଶାର ସଂସ୍କୃତ ଲେଖା ଓ ଲେଖକ—ପଣ୍ଡିତ ନୀଳମଣି ମିଶ୍ର, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର (୧୯୭୨)

୧୫ । ଓଡ଼ିଆ ଗୀତିକାବ୍ୟ—ଡକ୍ଟର ଜାନକୀବଲ୍ଲଭ ମହାନ୍ତି, ଗ୍ରନ୍ଥମନ୍ଦିର, କଟକ (୧୯୬୬)

୧୬ । ପ୍ରାଚୀନ ଓଡ଼ିଆ ଲିପି, ଭାଷା ଓ ସାହିତ୍ୟ—ପଣ୍ଡିତ ନୀଳମଣି ମିଶ୍ର, ଗ୍ରନ୍ଥମନ୍ଦିର, କଟକ (୧୯୭୬)

୧୭ । ଓଡ଼ିଆ ବୈଷ୍ଣବ ସାହିତ୍ୟ— ଡକ୍ଟର ନଟବର ସାମନ୍ତରାୟ, ବାଣୀଭଣ୍ଡାର, କଟକ, (୧୯୫୯)

୧୮ । ଓଡ଼ିଆ ସାହିତ୍ୟର ଇତିହାସ— ଡକ୍ଟର ମାୟାଧର ମାନସିଂହ, ଗ୍ରନ୍ଥମନ୍ଦିର, କଟକ (୧୯୬୭)

୧୯ । ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ବିନାୟକ ମିଶ୍ର, ଉତ୍କଳ ସାହିତ୍ୟ ପ୍ରେସ୍, କଟକ (୧୯୨୮)

୨୦ । ଓଡ଼ିଶା ଇତିହାସ—ଡକ୍ଟର ହରେକୃଷ୍ଣ ମହତାବ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର (୧୯୪୮)

୨୧ । କେତୋଟି ସାହିତ୍ୟିକ ଅନ୍ୱେଷଣ—ଡକ୍ଟର କୃଷ୍ଣଚରଣ ବେହେରା, ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ (ପରିବର୍ଦ୍ଧିତ ୨ୟ ସଂସ୍କରଣ—୧୯୭୭)

୨୨ । ଚମ୍ପୂ କାବ୍ୟକା ଆଲୋଚନାତ୍ମକ ଏବଂ ଐତିହାସିକ ଅଧ୍ୟୟନ—ଡକ୍ଟର ଛବିନାଥ ତ୍ରିପାଠୀ, ଚୌଖମ୍ବା ବିଦ୍ୟାଭବନ, ବାରଣାସୀ (୧୯୬୫)

୨୩ । ଗୀତ କାବ୍ୟ କା ଭୂମିକା—ଡକ୍ଟର ନଗେନ୍ଦ୍ର, ଗୌତମ ବୁକ୍ ଡ଼ିପୋ, ଦିଲ୍ଲୀ (୧୯୪୯)

୨୪ । କାମସୂତ୍ରମ୍—ବାତ୍ସ୍ୟାୟନ, ଅନୁ:—ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା, ଶିରୋମଣି ମୁଦ୍ରାଳୟ, ବ୍ରହ୍ମପୁର (୧୯୭୨)

୨୫ । Orissa under Marathas—Dr. B. C. Ray, Kitab Mahal, Allahabad (1960)

୨୬ । Utkal University History of Orissa, Vol. VI P. Mukherjee Vani Vihar, Bhubaneswar (1964)